# ଜିଣ!





୧ ମ ପୁରସ୍କାରଃ ଆମେରିକା ଓ
ଜାପାନ ସ୍ଥିତ ଡିଜନୀଲାଣ୍ଡ ଦେଖିବା ଯାତ୍ରା !

୨ ୟ ପୁରସ୍କାରଃ ସୁଦୃଶ୍ୟ
ସ୍ପୋର୍ଟ୍‌ସ ବାଇସାଇକଲ !

ସହିଳ ପହଞ୍ଚିବା ପୁରସ୍କାର
ପ୍ରତି ସପ୍ତାହରେଃ
ସୁନ୍ଦର ଡିଜିଟାଲ ଘଣ୍ଟା !

ଶୀଘ୍ର କର !
ବନ୍ଦହେବା ତାରିଖ
୧୪ ସେପ୍ଟେମ୍ବର ’୮୫

## ଭାଗ ନିଅ




**ପପିନ୍‌ସ ‘ସ୍ପେଲ୍-ଏ-ପ୍ରାଇଜ’ ପ୍ରତିଯୋଗିତା!**

**ପ୍ରବେଶ-ପତ୍ର ତମ ପାଖ ଦୋକାନରୁ ପାଇବ ।**

everest/85/PP/125-or

# ...ନମ୍ବର ନଡ଼ିଆ ତେଲ ପାଇଁ
# ...ଅପେକ୍ଷା କରି ବସିଛନ୍ତି, କହିଲେ ?

...ନ୍ୟାନ୍ୟ ସର୍ବତ୍ର ପାରାଶୁଟ ନଡ଼ିଆ ତେଲ ଯେ କେତେ ଜନପ୍ରିୟ
...ଇଛି ତାହା ଆପଣ ନିଶ୍ଚୟ ଶୁଣିଥିବେ ! ଏବେ ତାହା ଅବଶ୍ୟ
ଆପଣଙ୍କ ଦୁଆର ମୁହଁରେ ଆସି ପହଞ୍ଚିଲା —
ଖାଲି ଟିକିଏ ସମୟ ଲାଗିଲା !

ଆଧୁନିକ, ସୁବିଧାଜନକ ଏବଂ ସମ୍ପୂର୍ଣ୍ଣ ଖାଣ୍ଟି ଏହି ପାରାଶୁଟ
ନଡ଼ିଆ ତେଲ ଏଠାକୁ ଆଣିବାର କାରଣ
କ'ଣ ଜାଣନ୍ତି କି ! ଏହାର ପୁଷ୍ଟିକର ଗୁଣ — ଯାହା
ଆପଣଙ୍କ ସଘନ ଦୀର୍ଘ କୁନ୍ତଳ'ର ପ୍ରାପ୍ୟ !

47x18
846
108
954

954
250
704

72
72
84

846
110
956
250
706

## ପାରାଶୁଟ
### ନଡ଼ିଆ ତେଲ



ଶେଷକୁ ଶ୍ରେଷ୍ଠ ଜିନିଷଟି
ହିଁ ଆସି ପହଞ୍ଚିଲା !








# ାଗଣା ସେବା ଓ ଅସଲି ଯନ୍ତ୍ରାଂଶ
# ାପର୍ଯ୍ୟନ୍ତ ହକିନ୍‌ସ'ର ୧୪୭ ଟି ସେବା କେନ୍ଦ୍ରମାନଙ୍କରେ ପାଇବେ!

## ାଗଣା ସେବା ଓ ଅସଲି ଯନ୍ତ୍ରାଂଶ

ବଳ ହକନ୍‌ସ, ୧୪୭ ଟି ଅଧିକୃତ ସେବା
ଜରିଆରେ ଆପଣଙ୍କୁ ମାଗଣା ସେବା
ୋଗାଇଦିଏ—ଭାରତ ସାରା !
ଉପେୟାରିଂ କାମ ହାତକୁ ନେବା, ଅସଲ
ଂଶ ଓ ପ୍ରଶିକ୍ଷିତ ମେକାନିକଗଣ ଆପଣଙ୍କୁ
ା ଦେବା ଲାଗି ସର୍ବଦା ପ୍ରସ୍ତୁତ । ଅବଶ୍ୟ, ଯଦି
ଭ ଆପଣଙ୍କୁ ସେମାନଙ୍କ ଆବଶ୍ୟକତା ପଡ଼େ !

## ାଇନ କରିବାଠୁ ଡେଲିଭରୀ ପର୍ଯ୍ୟନ୍ତ
## ତ୍ୟେକ ସୋପାନରେ ଅତ୍ୟଧିକ ଯତ୍ନ

କନ୍‌ସ ଡିଜାଇନ
ରାପଦ ନ ହେବା ଯାଏଁ ଢାଙ୍କୁଣୀ
ଖୋଲିବାକୁ ଦିଏନା
ସଫ୍‌ଟି ଭଲ୍‌ଭକୁ ଅଧିକ ସୁରକ୍ଷା ଦେବା ଭଳି
ଜରେ ବସାଏ
ୟାଣ୍ଡ୍‌କେଟ୍‌କୁ ଦୀର୍ଘସ୍ଥାୟୀ କରାଏ
ାନ୍ଧଣା ଶୀଘ୍ରତର କରାଏ
ହକିନ୍‌ସ ଠାରେ ମାଲ'ର ଚୟନ ଓ ପରଖ,
ଣ'ର ପ୍ରତିଟି ସୋପାନ, ପ୍ୟାକେଜିଙ୍ଗ ଠୁ
ବିତରଣ ପର୍ଯ୍ୟନ୍ତ ପ୍ରତି କ୍ଷେତ୍ରରେ ଅତ୍ୟଧିକ ଧ୍ୟାନ
ଯାଏ । ତା'ପରେ ଯାଇଁ ଆପଣଙ୍କ ହାତରେ
ଷ୍ଠ ସର୍ବୋତ୍ତମ କୁକର !

## ଧିକାଧିକ ମିତବ୍ୟୟିତା ଏବଂ ସୁବିଧା–
## ଟି ଯାକ ମଡେଲ ଦ୍ୱାରା !

ରୁ ୧୨ ଲିଟର ପର୍ଯ୍ୟନ୍ତ ଦଶଟି ସାଇଜ୍ ।
ସାଇଜଗୁଡ଼ିକ ନବଦମ୍ପତିଙ୍କ ଲାଗି ଆଦର୍ଶ ଓ
ଛୁଆ କିମ୍ବା ବୟସ୍କମାନଙ୍କ ଲାଗି ବିଶେଷ ଖାଦ୍ୟ
ଏହି) ପ୍ରସ୍ତୁତ ଲାଗି ବି ବେଶ୍ ଉପଯୋଗୀ ।

ଅଉ ବଡ଼ ସାଇଜଗୁଡ଼ିକ ଯୌଥ ପରିବାର ତଥା ଉତ୍ସବ ପ୍ରସଙ୍ଗରେ ତ ବେଶ୍ ମିତବ୍ୟୟୀ ପ୍ରମାଣିତ ହୁଏ ।

କୁକରଗୁଡ଼ିକ (୪ ରୁ ୧୨ ଲିଟର) ସେପରେଟର ବିନା କିମ୍ବା ସହିତ ମିଳେ; ଆଉ ସେପରେଟର ଯୋଗେ ଆପଣ ଦୁଇ ବା ତିନୋଟି ବ୍ୟଞ୍ଜନ ଥରକେ ରାନ୍ଧିପାରନ୍ତି । କୁକରଗୁଡ଼ିକ (୫ ରୁ ୧୨ ଲିଟର) ଷ୍ଟେନ୍‌ଲେସ ଷ୍ଟୀଲ ସେପରେଟର ସହିତ ବି ମିଳୁଛି ।

କୁକରଗୁଡ଼ିକ (୪ ଓ ୫ ଲିଟର) ମିଳୁଛି ନୂଆ ରେଶମି-ଧୂସରିଆ **ହାର୍ଡିଲନ୍**® ଫିନିଶରେ, ଯାହା ଚଞ୍ଚଳ ଗରମ କରିବା ସାଥିରେ ଦୀର୍ଘସ୍ଥାୟୀ ସୁନ୍ଦରତା ଭରିଦିଏ—ନୂଆ **ହାର୍ଡିଲନ୍**® ଫିନିଶ ଥିବା ହକିନ୍‌ସ ଫ୍ୟୁଚୁରାରେ ଅନେକାନେକ ସୁବିଧା ଅଛି । ପାଞ୍ଚ ଲିଟରବାଲା କୁକର ଷ୍ଟେନ୍‌ଲେସ ଷ୍ଟୀଲରେ ବି ମିଳୁଛି ।

କୁକରଗୁଡ଼ିକ (୪ ରୁ ୮ ଲିଟର) ମିଳୁଛି ଷ୍ଟାଣ୍ଡା
ବେସ୍ ବା ୬.୩ ସି.ସି. ବହଳା ହେଭି ବେସ୍‌ରେ
ଯାହା ପ୍ରେସର କୁକିଙ୍ଗ ପୂର୍ବରୁ ଭାଜିବା-ସିଝେଇ
ଲାଗି ବେଶ୍ ଉପଯୋଗୀ ।

## ଫୁଲା ଫୁଲା ଇଡଲି ତିଆର କରନ୍ତୁ ।

ହକିନ୍‌ସ ଇଡଲି ଷ୍ଟାଣ୍ଡ (ଅଲଗା ମିଳେ) ଦ୍ୱାର
ମୁଖରୋଚକ ଇଡଲି ଛଅ ମିନିଟରେ ପ୍ରସ୍ତୁ
କରନ୍ତୁ । ପରିବାରବର୍ଗଙ୍କୁ ଘରେ ହିଁ ସ୍ୱାଦିଷ୍ଟ, ପୋଷ
ଜଳଖିଆ ଦିଅନ୍ତୁ !

## ନିଜ ଭାଷାରେ ୪୮ ପରୀକ୍ଷିତ
## ବ୍ୟଞ୍ଜନ ବିଧି ।

ପ୍ରତିଟି ହକିନ୍‌ସ ସହିତ ନେଇଯାଆନ୍ତୁ ୧୩
ଭାଷା ଭିତରୁ ନିଜ ଭାଷାରେ ଲିଖିତ 'ବ୍ୟଞ୍ଜ
ପୁସ୍ତିକା' ମାଗଣାରେ !
ବିଭିନ୍ନ ପ୍ରକାରର ସ୍ୱାସ୍ଥ୍ୟକର, ମୁଖରୋଚ
ବ୍ୟଞ୍ଜନ ରାନ୍ଧିବା ଶିଖନ୍ତୁ—ନିଜର ସମୟ ଓ ଧ
ବଞ୍ଚାନ୍ତୁ, ପରିବାରବର୍ଗଙ୍କ ପ୍ରଶଂସା ପାଆନ୍ତୁ ।

## ହାୟର-ପର୍ଚ୍ଚେଜ କିମ୍ବା ନଗଦ ରହା

ପ୍ରାଥମିକ ଦେୟ ଟ ୧୦/- (ବାକି ପରିମ
ଛଅଟି ମାସିକ କିସ୍ତିରେ), ହକିନ୍‌ସ ଅଧିକୃତ ହାୟ
ପର୍ଚ୍ଚେଜ ଯୋଜନା ଅନ୍ତର୍ଗତ ଦେବାକୁ ଦୁ
ବିକ୍ରେତାମାନଙ୍କ ଠିକଣା କିମ୍ବା ଅନ୍ୟ ବିବର
ଲାଗି ଲେଖନ୍ତୁ: ହକିନ୍‌ସ ଡିପାର୍ଟମେଣ୍ଟ ୨୦୮
ପୋ. ଅ. ବାକ୍ସ ୬୪୮୧, ବମ୍ବେ-୪୦୦ ୦୦୧୬ ।

ହକିନ୍‌ସ–
ଆପଣଙ୍କର ଜଣେ ପ୍ରିୟ ସାଙ୍ଗ!

# ହକିନ୍‌ସ®
## ପ୍ରେସର କୁକର

® ରେଜିଷ୍ଟର୍ଡ ଟ୍ରେଡ ମାର୍କ © ୧୯୮୪ ଦ୍ୱାରା
ପ୍ରେସର କୁକର୍ସ ଆଣ୍ଡ ଅପ୍ଲାଏନସେସ୍ ଲି, ଦ୍ୱାରା ।
™ ଟ୍ରେଡ ମାର୍କ ପେଟେଣ୍ଟ ପେଣ୍ଡିଙ୍ଗ

**ସର୍ବାଧିକ ସୁରକ୍ଷିତ, ସବୁଠୁ ଶୀଘ୍ର ରାନ୍ଧିଦିଏ ସ୍ୱାଦିଷ୍ଟ ଖାଦ୍ୟ**

rest/85/PCA/106-208-ori

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

---

ଦଣ୍ଡକାରଣ୍ୟ ଭିତରେ, କୋରାପୁଟ ଜିଲ୍ଲାର ମାଲ୍‌କାନ୍‌ଗିରିର ଅଦୂରରେ ଆଜି ବି ପ୍ରବାହିତା ଶାନ୍ତ ସୁଶୀତଳ ନଦୀ ତମସା । ଏହାରି ତଟରେ ଦିନେ ଆମର ଆଦିକବି ବାଲ୍ମିକୀ ରଚନା କରିଥିଲେ ପୃଥିବୀର ପ୍ରଥମ କବିତା ଏବଂ ପରେ ପରେ ମହାକାବ୍ୟ ରାମାୟଣ । ଏ ସଂଖ୍ୟାରେ ପଢ଼ନ୍ତୁ ସେହି ତମସାର କିମ୍ବଦନ୍ତୀ ।

### ଅମରବାଣୀ

ତାବଦ୍ ଭୟାତ୍ତୁ ଭେତବ୍ୟଂ ଯାବଦ୍ ଭୟମନାଗତମ୍ ।
ଆଗତଂ ତୁ ଭୟଂ ବୀକ୍ଷ୍ୟ ପ୍ରତିକୁର୍ଯ୍ୟାଦ୍ ଯଥୋଚିତମ୍ ॥

[ଭୟର କାରଣ ଉପସ୍ଥିତ ନ ହେବା ପର୍ଯ୍ୟନ୍ତ ତାକୁ ଭୟ କରିବ । କିନ୍ତୁ ତାହା ପହଞ୍ଚିଗଲେ ତେଣିକି ଆଉ ଭୟ ନକରି ତା'ର ଉଚିତ ପ୍ରତିକାର କରିବ ।]

---

ବର୍ଷ : ୧୯ | ଜୁଲାଇ ୧୯୮୫ | ଅଙ୍କ : ୧

ପ୍ରତିସଂଖ୍ୟା : ଟ. ୨.୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦






# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ପୃଥିବୀର ଉଚ୍ଚତମ ହାତୀ

ପୃଥିବୀର ସବୁଠାରୁ ଦୀର୍ଘକାୟ ହାତୀକୁ ଦେଖିବା ନିମନ୍ତେ ବେଶି ଦୂର ଯିବା ଲୋଡ଼ା ନାହିଁ । କାଠମାଣ୍ଡୁର ପାଞ୍ଚ କିଲୋମିଟର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ସଂରକ୍ଷିତ ଅରଣ୍ୟ ଭିତରେ ସେ ବୁଲୁଛି ।

## କଥାକୁହା ମାଛ




ସୁଇଡେନ୍‌ର ଜଣେ ଗବେଷକ ଦଶବର୍ଷ ମାଛମାନଙ୍କ ଭାଷା ଉପରେ ଗବେଷଣା କରି ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ମାଛମାନଙ୍କର ଗୋଟିଏ ନିର୍ଦ୍ଦିଷ୍ଟ ଭାଷା ରହିଛି । ସ୍ୱରରେ ସୂକ୍ଷ୍ମ ତାରତମ୍ୟ ସୃଷ୍ଟି କରି ସେମାନେ ଭିନ୍ନ ଭିନ୍ନ ଅର୍ଥ ବୁଝାଇଥାନ୍ତି ।

## ବୟସ୍କଙ୍କ ଦେଶ



ରୁଷିଆର ଆଜାର୍‌ବାଇଜାନ୍‌ରେ ଅଛନ୍ତି ଦେଢ଼ ହଜାରରୁ ଅଧିକ ଲୋକ, ଯେଉଁମାନଙ୍କ ବୟସ ଶହେରୁ ଅଧିକ । ସେମାନଙ୍କ ଭିତରେ ସବୁଠାରୁ ବୟସ୍କା ଝିଅ, ତାଙ୍କ ନାମ ଆଲ୍ଲା ଖିଆରୋଭା । ତାଙ୍କ ବୟସ ୧୫୧; ସେ ଏବେ ବି କାର୍ପେଟ ବୁଣା ଓ ଘର କାମରେ ଲାଗିଥାନ୍ତି । ତାଙ୍କର ୧୦୪ ବର୍ଷ ବୟସ୍କା କନ୍ୟାଟିଏ ଅଛନ୍ତି ।

## ଜାଣନ୍ତି କି ?

୧. ରସାୟନ ବିଜ୍ଞାନରେ ଓ ଶାନ୍ତିରେ ନୋବେଲ୍ ପୁରସ୍କାର ପ୍ରାପ୍ତ ବ୍ୟକ୍ତି କିଏ?

୨. ଦୁଇଥର ନୋବେଲ୍ ପୁରସ୍କାର ପ୍ରାପ୍ତ ଦ୍ୱିତୀୟ ବ୍ୟକ୍ତି କିଏ ?

୩. ସୋଭିଏତ୍ ରୁଷିଆରେ ପ୍ରଥମ ନୋବେଲ୍ ପୁରସ୍କାର-ବିଜେତା କିଏ ?

୪. "ମୋଲିକ୍ୟୁଲ" (Molicule) ଶବ୍ଦର ରୂପଦାତା ବୈଜ୍ଞାନିକ କିଏ ?

୫. ମାଇକେଲ୍ ଫେରାଡେଙ୍କୁ ରୟାଲ୍ ସୋସାଇଟିର ସଦସ୍ୟ କରି ନେବାର ପ୍ରସ୍ତାବ ବିରୁଦ୍ଧରେ ମତ ଦେଇଥିଲେ କିଏ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ଶ୍ରେଷ୍ଠ କଳାକାର !

ପ୍ରତାପ ନିଜେ କଳାକାର ବା କବି ନ ଥିଲା, କିନ୍ତୁ କଳାକାର ଓ କବିମାନଙ୍କ ସକାଶେ ଅନୁଷ୍ଠାନର ଆୟୋଜନ କରିବା ଥିଲା ତା'ର କାମ । ଭିନ୍ନ ଭିନ୍ନ ସ୍ଥାନରେ ସେ ସଙ୍ଗୀତଜ୍ଞମାନଙ୍କ ସକାଶେ କାର୍ଯ୍ୟକ୍ରମର ବ୍ୟବସ୍ଥା କରୁଥାଏ । ଲୋକେ ଅବଶ୍ୟ ପଇସା ଦେଇ ସେସବୁ କାର୍ଯ୍ୟକ୍ରମ ଉପଭୋଗ କରୁଥାନ୍ତି । ସଙ୍ଗୀତଜ୍ଞଙ୍କୁ ତା'ର ପ୍ରାପ୍ୟ ଦେଇ ପ୍ରତାପ ନିଜେ କିଛି ରଖୁଥାଏ । ତାହାହିଁ ଥିଲା ତା'ର ଉପାର୍ଜନର ପନ୍ଥା । ସେଥିରେ ସେ ନିଜେ ଭଲରେ ଚଳୁଥିଲା । କଳାକାରମାନେ ବି ଉପକୃତ ହେଉଥିଲେ ।

କ୍ରମେ ପ୍ରତାପ ଶିଳ୍ପୀ ଓ ସଙ୍ଗୀତଜ୍ଞମାନଙ୍କ ପାଖରେ ଖୁବ୍ ଜନପ୍ରିୟ ହୋଇ ଉଠିଲା । ସେମାନେ ତାକୁ ନିଜର ଶାର୍ଜନ ଭଲ ମନେ କରନ୍ତି । ପ୍ରତାପ ମଧ୍ୟ ଯାହା ପାଖରେ ପ୍ରତିଭା ଥାଏ, ତା'ର କପରି ଉନ୍ମେଷ ହେବ, ସେ କପରି ଲୋକଲୋଚନକୁ ଆସିବ, ସେ ଦିଗରେ ସବୁ ପ୍ରକାର ଉଦ୍ୟମ କରୁଥାଏ । ଅନେକ ସମୟରେ ଗରିବ ଶିଳ୍ପୀମାନଙ୍କୁ ସେ ନିଜ ଉପାର୍ଜନରୁ ଯଥା ସମ୍ଭବ ସାହାଯ୍ୟ କରୁଥାଏ ।

ଥରେ ସେ ଯାଇ ଚନ୍ଦନପୁରରେ ପହଞ୍ଚିଲା । ଚନ୍ଦନପୁର ଗୋଟିଏ ବଡ଼ ଗାଁ । ସେଠାରେ ପ୍ରତାପ ସାଥିରେ ଯାଇଥିବା ତିନି ଗୁଣିଜଣ ଗାୟକ ଓ ବାଦକ ନିଜ ନିଜ ବିଦ୍ୟା ପ୍ରଦର୍ଶନ କରି ଲୋକଙ୍କଠୁଁ ବାହାବା ପାଇଲେ । ସଙ୍ଗେ ସଙ୍ଗେ ଚନ୍ଦନପୁରର ଜମିଦାର ଜୟକୃଷ୍ଣବାବୁ ସେମାନଙ୍କୁ ନିଜ ଘରକୁ ନିମନ୍ତ୍ରଣ କରି ପ୍ରଚୁର ଖିଆପିଆ କରାଇଲେ ଓ ସ୍ୱର୍ଣ୍ଣପଦକମାନ ପୁରସ୍କାର ଦେଲେ ।

ଜୟକୃଷ୍ଣବାବୁଙ୍କ ବ୍ୟବହାରରେ ଅଭିଭୂତ ହେଲା ପ୍ରତାପ । ତେଣିକି ସେ ବାରମ୍ବାର ଗାୟକ

ଶ୍ୟାମସୁନ୍ଦର



ଓ ଶିଳ୍ପୀମାନଙ୍କୁ ଧରି ଚନ୍ଦନପୁର ଯାଏ ଏବଂ ଜୟକୃଷ୍ଣବାବୁଙ୍କ ଅଭ୍ୟର୍ଥନା ଗ୍ରହଣ କରେ ।

"ଗୁଣୀମାନଙ୍କ ଗୁଣର ସମ୍ମାନ ସମସ୍ତେ ଦେଇ ଜାଣନ୍ତି ନାହିଁ । ସେଭଳି ସମ୍ମାନ ଦେବାରେ ଆନନ୍ଦ ଅଛି !" ହସି ହସି ଜୟକୃଷ୍ଣବାବୁ କହନ୍ତି ।

"ଆପଣଙ୍କ ଭଳି ଗୁଣର ଆଦର କରୁଥିବା ବ୍ୟକ୍ତି ମୁଁ ଦ୍ୱିତୀୟ ଦେଖି ନାହିଁ । ଆପଣ ଧନ୍ୟ ।" ପ୍ରତାପ କହେ । ଜୟକୃଷ୍ଣବାବୁ ହସି ଦିଅନ୍ତି ।

କେତେ ବର୍ଷ ଚାଲିଗଲା । ଥରେ ପ୍ରତାପ ଭାବିଲା, ଯେଉଁ ଜୟକୃଷ୍ଣବାବୁ କଳାକାର-ମାନଙ୍କର ଏତେ ଆଦର କରୁଛନ୍ତି, ଥରେ ଜନସାଧାରଣ ତାଙ୍କୁ ସମ୍ବର୍ଦ୍ଧନା ଦେବା ଉଚିତ । ପ୍ରଚୁର କଳାଜ୍ଞାନ ଅଛି ବୋଲି ସିନା ଜୟକୃଷ୍ଣବାବୁ କଳାକାରମାନଙ୍କୁ ସମ୍ମାନ ଦେଉଛନ୍ତି ! କଳାକାରମାନଙ୍କର ପୃଷ୍ଠପୋଷକ ହିସାବରେ ତାଙ୍କୁ ସମ୍ମାନ ମିଳିବା ଯୁକ୍ତିଯୁକ୍ତ ହେବ ।

ସେଦିନ ପ୍ରତାପ ଶ୍ରୀନଗର ନାମକ ଗ୍ରାମର ମୁଖ୍ୟ ବ୍ୟକ୍ତି ରମେଶବାବୁଙ୍କ ଘରେ ଅତିଥି ହୋଇଥାଏ । ମନ୍ଦିର ଆଗରେ ସନ୍ଧ୍ୟାବେଳେ ପାଦଚାରଣା କରୁଥିବା ଅବସରରେ ସେ ରମେଶବାବୁଙ୍କ ଆଗରେ ନିଜ ମନୋଭାବ ପ୍ରକାଶ କଲା ।

ରମେଶବାବୁ ଗମ୍ଭୀର ହୋଇ କହିଲେ, "ତମେ ଯଦି ସେଭଳି କିଛି କରିବାକୁ ଚାହଁ, ତେବେ ମୁଁ ଅବଶ୍ୟ ସହଯୋଗ କରିବି । ତେବେ ଜାଣିରଖ, ଜୟକୃଷ୍ଣ ଭୀଷଣ ଗର୍ବୀ । ତାଙ୍କୁ ସମ୍ବର୍ଦ୍ଧନା ଦେଲେ ତା'ର ଗର୍ବ ବଢ଼ିବ ସିନା, କମିବ ନାହିଁ ।"

ପ୍ରତାପ ଏ ମନ୍ତବ୍ୟ ଶୁଣି ଚୁପ୍ ହୋଇଗଲା । ସେ ଏହାପରେ ଖାସ୍ ଚନ୍ଦନପୁରର କେତେଜଣ ବିଶିଷ୍ଟ ଲୋକଙ୍କ ସହ କଥାବାର୍ତ୍ତା କରି ବୁଝିନେଲା କି ସେମାନେ କେହି ଜୟକୃଷ୍ଣବାବୁଙ୍କୁ ସମ୍ବର୍ଦ୍ଧନା ଦେବା ପ୍ରସ୍ତାବରେ ବିଶେଷ ଉତ୍ସାହ ଅନୁଭବ କରୁ ନାହାନ୍ତି । ସେ ମନେ ମନେ ଆଶ୍ଚର୍ଯ୍ୟ ହେଲା ।

ଏହାର ରହସ୍ୟ ବୁଝିବା ପାଇଁ ସେ ସେଦିନ ଜୟକୃଷ୍ଣବାବୁଙ୍କ ଘରେ ଯାଇ ପହଞ୍ଚିଗଲା । "କହୋ, କୁଆଡ଼େ ଆସିଲ ? ଏବେ କିଛି

କାର୍ଯ୍ୟକ୍ରମର ବ୍ୟବସ୍ଥା ହେଉଛି କି?" ଜୟକୃଷ୍ଣବାବୁ ପଚାରିଲେ।

"ନା, ସେମିତି କିଛି କାମ ହାତକୁ ନେଇ ନାହିଁ। ଏ ବାଟରେ ସହରକୁ ଯାଉଥିଲି। ଭାବିଲି ଆପଣଙ୍କୁ ନମସ୍କାରଟାଏ ପକାଇ ଯିବି।" ପ୍ରତାପ କହିଲା।

"ବେଶ୍, ବେଶ୍।" ଜୟକୃଷ୍ଣବାବୁ ଖୁସି ହେଲେ।

"ଆଜ୍ଞା, ଆପଣଙ୍କୁ ଗୋଟାଏ କଥା ପଚାରିବି ପଚାରିବି ବୋଲି କେବେଠୁଁ ଭାବୁଛି। ଆପଣ କଳାକୁ ଏତେ ଭଲ ପାଆନ୍ତି। ଆପଣ ନିଜେ କଳାର ଅଭ୍ୟାସ ନ କଲେ କାହିଁକି?"

ଜୟକୃଷ୍ଣବାବୁ ଟିକିଏ ଗମ୍ଭୀର ହୋଇ ପଚାରିଲେ, "ମୁଁ କଳାର ଅଭ୍ୟାସ ନିଜେ କରିନାହିଁ ବୋଲି ତମର ଧାରଣା ହେଲା କାହିଁକି?"

"ଆଜ୍ଞା···ମୁଁ ତକେବେ କାହିଁ···"

"ଦେଖିନାହିଁ? ଏଇଆ ତ? ଆସ, ଭିତରକୁ ଆସ।" ଏହା କହି ଜୟକୃଷ୍ଣବାବୁ ପ୍ରତାପକୁ ତାଙ୍କ ବସ୍ତା ଘରର ଗୋଟିଏ ଅଂଶକୁ ନେଇଗଲେ। ପ୍ରତାପ ଦେଖିଲା ସେଠାରେ କାନ୍ଥମାନଙ୍କରେ କେତୋଟି ସୁନ୍ଦର ଛବି ଟଙ୍ଗା ହୋଇଛି। ସେସବୁ ଜୟକୃଷ୍ଣବାବୁଙ୍କ ଅଙ୍କିତ। ପ୍ରତାପବାବୁ କଳାର ଉତ୍କୃଷ୍ଟ ସମଝଦାର ଥିଲେ। ସେ ଦେଖିଲେ, ସେସବୁ ଛବି ପ୍ରଥମ ଶ୍ରେଣୀର ନହେଲେ ମଧ୍ୟ ବେଶ୍ ଭଲ।



"ଆଜ୍ଞା, ଆପଣ ଏଡ଼େ ସୁନ୍ଦର ଅଙ୍କନ ଜାଣିଛନ୍ତି, ଅଥଚ ଏକଥା କେହି ଜାଣି ନାହାନ୍ତି କିପରି?" ପ୍ରତାପ ଆଶ୍ଚର୍ଯ୍ୟ ହୋଇ ପଚାରିଲା।

"ହାଃ ହାଃ, କାହାକୁ ଦେଖାଇବି? ମୋ କଳା ବୁଝିବା ଭଳି ମଣିଷ କାହିଁ?" ଏହା କହି ଜୟକୃଷ୍ଣବାବୁ ପ୍ରତାପକୁ ନିଜ ଉଦ୍ୟାନ ଭିତରକୁ ନେଇଗଲେ ଓ ଗୋଟିଏ ଗୀତ ବୋଲିଲେ। ପ୍ରତାପ ଦେଖିଲା, ସେ ମନ୍ଦ ବୋଲି ନାହାନ୍ତି। ସେ ପୁଣି ବିସ୍ମିତ ହୋଇ ପଚାରିଲା, "ଆପଣ ଏଡ଼େ ଚମତ୍କାର ଗୀତ ବୋଲିଛନ୍ତି, ଅଥଚ ଏକଥା କେହି ଜାଣି ନାହାନ୍ତି କିପରି?"

"ଖାଲି ଶୀଘ ? ଚଉଷଠି ପ୍ରକାର କଳାରେ ମୁଁ ସମସ୍ତଙ୍କ ଶୀର୍ଷ ସ୍ଥାନରେ ରହିବି । କିନ୍ତୁ ଏ ରାଜ୍ୟରେ ମୋ ପ୍ରତିଭାର କଦର ବୁଝିବା ଭଳି ସମଝଦାର କେହି ନାହିଁ!" କହିଲେ ଜୟକୃଷ୍ଣବାବୁ ।

"ନା, ନା, ଆପଣ ଯେମିତ୍ ଅନ୍ୟମାନଙ୍କ ପ୍ରତିଭା ବୁଝି ସେମାନଙ୍କୁ ସାହାଯ୍ୟ କରୁଛନ୍ତି, ସେମିତି ଆପଣଙ୍କ ପ୍ରତିଭା ବୁଝିବା ଭଳି ଲୋକ ଅଛନ୍ତି ।"

"ମୋତେ କ'ଣ ଅନ୍ୟମାନଙ୍କ ସହ ସମାନ କରିଦେଲ ?" ଜୟକୃଷ୍ଣବାବୁ କ୍ଷୁବ୍ଧ ହୋଇ କହିଲେ ।

"ମୁଁ ଆପଣଙ୍କ ବହୁମୁଖୀ ପ୍ରତିଭା କଥା ରାଜାଙ୍କୁ କହିବି । ସେ ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇବେ ।" ପ୍ରତାପ କହିଲା ।

"ହାଃ, ହାଃ, ରାଜାଙ୍କର କେତେ ଶକ୍ତି ଯେ ସେ ମୋ ଗୁଣର ମର୍ଯ୍ୟାଦା ବୁଝିବେ ? କେବଳ ମୁଁ ଜାଣେ ମୋର ଗୁଣ କେତେ ! ସେଥିପାଇଁ ମୁଁ ଅନ୍ୟମାନଙ୍କ ଗୁଣର ଆଦର କରିଥାଏଁ ।" ଜୟକୃଷ୍ଣବାବୁ ଏହା କହି ପୁଣି ଅଟ୍ଟହାସ୍ୟ କଲେ ।

ପ୍ରତାପ ସ୍ତମ୍ଭିଭୂତ ହୋଇ ରହିଲା । ସେ ତାଙ୍କଠାରୁ ବିଦାୟ ନେଇ ଧିରେ ଧିରେ ବାଟ ଧରିଲା । ତା'ପରେ ଜୀବନରେ ସେ ଆଉ ଜୟକୃଷ୍ଣବାବୁଙ୍କଠାରୁ ପୁରସ୍କାର ବା ସମ୍ବର୍ଦ୍ଧନା ନେବାକୁ ମନ ବଳାଇ ନାହିଁ । ଜୟକୃଷ୍ଣବାବୁଙ୍କ ବଦାନ୍ୟତା ପଛରେ କଳା ପ୍ରତି ଆଦର ନ ଥିଲା, ଥିଲା ଗର୍ବ । ସେ ନିଜେ ଶ୍ରେଷ୍ଠ କଳାକାର ବୋଲି ତାଙ୍କର ଧାରଣା ଥିଲା ଏବଂ ଅନ୍ୟମାନଙ୍କୁ ପୁରସ୍କାର ଦେବାର ଅଧିକାର ତାଙ୍କର ଥିଲା ବୋଲି ସେ ଧରି ନେଇଥିଲେ । କିନ୍ତୁ ତାଙ୍କୁ ସମ୍ମାନ ଦେବା ଭଳି ଅଧିକାର କାହାରି ନଥିଲା ! ଏଡ଼େ ଭୀଷଣ ଗର୍ବୀ ପାଖରୁ ପୁରସ୍କାର ଗ୍ରହଣ କରିବାରେ କୌଣସି ଆନନ୍ଦ ଆଉ ରହିଲା ନାହିଁ !






[୭]

[ଚନ୍ଦ୍ରବର୍ମା ନଦୀରେ ଭାସି ଆସି ଗୋଟିଏ ଜଙ୍ଗଲ ପାଖରେ ଲାଗିଲେ। ସନ୍ଧ୍ୟା ହେଉ ଆସିବା ମାତ୍ରେ ସେ ଜଙ୍ଗଲ ଭିତରକୁ ଗଲେ ଓ କିଛି ଅଦ୍ଭୁତ ଶବ୍ଦ ଶୁଣି ଆଶ୍ଚର୍ଯ୍ୟ ହେଲେ। ସେ ଯାଇ ପହଞ୍ଚିଲେ କାପାଳିନୀ ନାମକ ମହିଳା ଯାଦୁକର ପାଖରେ। କାପାଳିନୀ ଗୋଟିଏ ଗୋଲାକାର ଚକ ଭିତରକୁ ଅନାଇ ତେଣେ ବୀରପୁରରେ ସେନାପତି ଧୀରମଲ୍ଲ କ'ଣ କରୁଛନ୍ତି, ସେକଥା କହିଦେଲା। ତା'ପରେ—]

ଚନ୍ଦ୍ରବର୍ମା ବିଚଳିତ ହେବାର ଦେଖି କାପାଳିନୀ ତାଙ୍କ କାନ୍ଧ ଥାପୁଡ଼ାଇ ଦେଇ କହିଲା, "ପୁଅ ଚନ୍ଦ୍ରବର୍ମା ! ତୁମେ ଧୈର୍ଯ୍ୟ ଧର। ବିପଦ ସ୍ଥାୟୀ ହେବ ନାହିଁ। ତୁମେ ପୁଣି ନିଜ ରାଜ୍ୟ ଫେରି ପାଇବ। ତୁମେ ଯଦି ମୋର ସହାୟତା କରିବ, ତେବେ ମୁଁ ଜରୁର୍ ତୁମକୁ ସବୁ ମତେ ସାହାଯ୍ୟ ଦେବି।"

କାପାଳିନୀର ଉତ୍ସାହବାଣୀ ଚନ୍ଦ୍ରବର୍ମା ଶୁଣିଲେ ସତ, କିନ୍ତୁ ସେଥିରେ ତାଙ୍କର ଉତ୍କଣ୍ଠା ଗଲା ନାହିଁ। ବହୁ ଯୋଜନ ଦୂରରେ ଥିବା ତାନ୍ତ୍ରିକ ଶଂଖୁର ଭବନରେ ପ୍ରବେଶ କରି କୌଣସି ବାସ୍ତୁ କାପାଳିନୀ ସକାଶେ ନେଇ ଆସିବାକୁ ପଡ଼ିବ। ସେଥିରେ କେତେଦୂର କ'ଣ ବିପଦ ଅଛି କହିବା ସହଜ



ନୁହେଁ । ତାନ୍ତ୍ରିକ ହାବୁଡ଼ରୁ ଖସି ଆସିବା ଖାଲି ଯେ କାଠିକର, ତାହା ନୁହେଁ, ସେଥିରେ ଜୀବନ ପ୍ରତି ବିପଦ ମଧ୍ୟ ରହିଛି । ସେଥିରୁ ଖସି ଆସିଲେ ଯାଇ କାପାଳିନୀ ତାଙ୍କୁ ସାହାଯ୍ୟ କରିବ । ଖସି ଆସି ନ ପାରିଲେ ?...

କାପାଳିନୀ ଚନ୍ଦ୍ରବର୍ମାଙ୍କ ମୁହଁକୁ ନିରୀକ୍ଷଣ କରୁଥାଏ । ସେ କହିଲା, "ଚନ୍ଦ୍ରବର୍ମା ! ତୁମ ମନରେ କି ପ୍ରକାର ସନ୍ଦେହ ଦେଖା ଦେଇଛି, ତାହା ମୁଁ ବେଶ୍ ବୁଝି ପାରୁଛି । ତମେ ଯଦି ମୋ ସହାୟତା ନ କରି ଏଠାରୁ ଚାଲିଯିବାକୁ ଚାହଁ, ତେବେ ଚାଲିଯାଇ ପାର ।"

କାପାଳିନୀର ଏ କଥା ଶୁଣି ଚନ୍ଦ୍ରବର୍ମା ଚିନ୍ତାରେ ବୁଡ଼ି ଗଲେ । ସେ ଯିବେ କୁଆଡ଼େ ? ଏ ବଣକୁ ସେ ଦୈବାତ୍ ଆସିଛନ୍ତି । ଏହା ଭିତରୁ ବାହାରିବାର ରାସ୍ତା ମଧ୍ୟ ତାଙ୍କୁ ମାଲୁମ୍ ନାହିଁ । ତେଣେ ପିତାଙ୍କ ମୃତ୍ୟୁ ଘଟିଛି । ରାଜ୍ୟ ଶତ୍ରୁ ହାତରେ ପଡ଼ିଛି । ବିଶ୍ୱସ୍ତ ସେବକ ତଥା ମିତ୍ର ସୁବାହୁଙ୍କର କ'ଣ ହୋଇଛି, ସେକଥା ସେ କିଛି ଜାଣନ୍ତି ନାହିଁ । ସେ ଏକୁଟିଆ ବଣ ଭିତରୁ ବାହାରି ଯାଇ ଯିବେ କୁଆଡ଼େ, କରିବେ କ'ଣ ? ଶତ୍ରୁ ପକ୍ଷର ଗୁପ୍ତଚରମାନେ ନିଶ୍ଚୟ ତାଙ୍କୁ ଖୋଜୁଥିବେ । ତାଙ୍କ ସନ୍ଧାନ ପାଇବା ମାତ୍ରେ ତାଙ୍କ ବିନାଶ କରିବେ । ଏଭଳି ପରିସ୍ଥିତିରେ ରାଜ୍ୟ ବାହାରେହିଁ ରହିବା ଉଚିତ ହେବନାହିଁ କି ? ଆବେଗ ଉପରେ କାମ କରିବାର ସମୟ ଇଏ ନୁହେଁ । ଭାବିଚିନ୍ତି ଯାହା କିଛି କରିବା କଥା । ଚନ୍ଦ୍ରବର୍ମା ଚିନ୍ତାରେ ଅକଳକୂଳ ପାଇଲେ ନାହିଁ ।

ସେ କିଛି ସମୟ ମୁଣ୍ଡ ତଳକୁ କରି ନୀରବ ରହିଲେ । ତା'ପରେ ନିଜର କର୍ତ୍ତବ୍ୟ ନିରୂପଣ କରି କାପାଳିନୀ ଆଡ଼େ ଅନାଇ କହିଲେ, "ମୁଁ ତୁମର ସହାୟତା କରିବାକୁ ପ୍ରସ୍ତୁତ । ଯାଦୁକର ଶଂଖୁ ଘରେ ପଶି ତୁମର ଦରକାରୀ ଚିଜ ନେଇ ଆସିବା ସକାଶେ ମୋର ଯଥାଶକ୍ତି ଉଦ୍ୟମ କରିବି । କୁହ, ସେ ଜିନିଷଟି କ'ଣ ।"

ଚନ୍ଦ୍ରବର୍ମାଙ୍କ ସିଦ୍ଧାନ୍ତ ଶୁଣି କାପାଳିନୀର ମୁହଁ ଝଲସି ଉଠିଲା । ସେ ଠିଆ ହେଲା ଓ ଗୋଟିଏ କାଠ ବାଡ଼ ଦେହରେ ଖଣ୍ଡିଏ ହାଡ଼ ବାଡ଼େଇ ଦେଇ କହିଲା, "ଭୈରବ ! ଆମ




ଘରକୁ ଅତିଥି ଆସିଛନ୍ତି। ତାଙ୍କୁ କିଛି ଖୁଆଅ।"

"ହୁମ୍!" ଆବାଜ୍ କରି ସଙ୍ଗେ ସଙ୍ଗେ ସେଠାରେ ଗୋଟାଏ ଭୀମକାୟ ବ୍ୟକ୍ତି ଆବିର୍ଭୂତ ହେଲା। "ଏଇ ନିଅ। ମନଇଚ୍ଛା ଖାଅ!" ଏହା କହି ସେ ନାନା ସ୍ୱାଦିଷ୍ଟ ଓ ସୁଗନ୍ଧ ଭୋଜନ ପୂର୍ଣ୍ଣ ସୁନାର ଥାଳଟିଏ ଚନ୍ଦ୍ରବର୍ମାଙ୍କ ଆଗରେ ଥୋଇଦେଲା।

ଚନ୍ଦ୍ରବର୍ମା ତ ସେତେବେଳକୁ କ୍ଷୁଧାରେ ଅଥୟ ହୋଇପଡ଼ିଥିଲେ। ସେ ଗବାଗବ୍ ଖାଇ ଯିବାକୁ ଲାଗିଲେ। ତାଙ୍କର ଗୋଟିଏ ପାଖରେ ଠିଆ ହୋଇ ଭୈରବ ଓ ଅନ୍ୟ ପାଖରେ ଠିଆ ହୋଇ କାପାଳିନୀ ସନ୍ତୋଷପୂର୍ଣ୍ଣ ଆଖିରେ ତାଙ୍କ ଭୋଜନ ଦେଖିବାକୁ ଲାଗିଲେ। ଖାଇସାରି ଚନ୍ଦ୍ରବର୍ମା ଥାଳ ଗୋଟାଏ କୋଣକୁ ଠେଲି ଦେବା ମାତ୍ରେ ଭୈରବ ତାଙ୍କୁ ପାଣି ଯୋଗାଇଦେଲା।

ଖାଇପିଇ ସାରିବା ମାତ୍ରେ ଚନ୍ଦ୍ରବର୍ମାଙ୍କ ମନ ପୁଣି ନାନା ସନ୍ଦେହରେ ଆନ୍ଦୋଳିତ ହେବାକୁ ଲାଗିଲା। ଯେଉଁ କାପାଳିନୀ ହାତରେ ଏତେ ଯାଦୁଶକ୍ତି ରହିଛି, ଯିଏ ଭୈରବ ଓ କାଳନାଗ ଭଳି ପ୍ରଚଣ୍ଡ ପ୍ରାଣୀମାନଙ୍କୁ ବଶ କରିପାରିଛି, ସେ ନିଜେ ତାନ୍ତ୍ରିକ ଶଂଖୁଠାରୁ ଆବଶ୍ୟକୀୟ କାମ କାହିଁକି ହାସଲ କରୁନାହିଁ? ଭୈରବଠୁଁ ବଳି ଅଧିକ କାମ ସେ ସାମାନ୍ୟ ପକ୍ଷିଟି ହୋଇ କ'ଣ ବା କରିପାରିବ? ଏହା ଭିତରେ କୌଣସି ଷଡ଼ଯନ୍ତ୍ର ନାହିଁ ତ?

କାପାଳିନୀ ଯେପରିକି ତାଙ୍କ ମନକଥା ବୁଝି ପକାଇଲା! ସେ କହିଲା, "ଚନ୍ଦ୍ରବର୍ମା! କଥା କ'ଣ କି, ତାନ୍ତ୍ରିକ ଶଂଖୁ ଘରେ ଅଦ୍ଭୁତ ଶକ୍ତି ସମ୍ପନ୍ନ ଗୋଟିଏ ଶଙ୍ଖ ରହିଛି। ପାଣିରେ କେତେକ ଧରଣର ଚେରମୂଳ ସିଦ୍ଧ କରି ସେ ପାଣି ସେ ଶଙ୍ଖରେ ପୂରାଇ ବାହାର କରି ଆଣି ପିଇଲେ ବାର୍ଦ୍ଧକ୍ୟ ଦୂର ହେବ; ଜଣେ ତରୁଣ ହୋଇଯିବ। ସେ କମସେ ହଜାରେ ବର୍ଷ କାଳ ବଞ୍ଚାଯାଇ ରହିବ। ଆଜିକୁ ଏକହଜାର ପଚିଶ ବର୍ଷ ତଳେ ମୁଁ ସେ ପାଣି ସେବନ କରିଥିଲି। ସେତେବେଳେ ତାନ୍ତ୍ରିକ ଶଂଖୁ



ମୋର ମିତ୍ର ଥିଲା । ପରେ କିନ୍ତୁ ସେ ମୋର ପରମ ଶତ୍ରୁ ବନିଗଲା ।"

କାପାଳିକା ହଠାତ୍ କଥା ବନ୍ଦ କରି ଭୈରବ ଆଡ଼େ କଟମଟ କରି ଅନାଇଲା ଓ ରୁକ୍ଷ କଣ୍ଠରେ କହିଲା, "ଦୁଷ୍ଟ ! ତୁ ଏବେ ବି ତୋ ମନ୍ଦବୁଦ୍ଧି ଛାଡ଼ିନାହୁଁ ।" ଏହା କହି ସେ ସେହି ବାଡ଼ି ଭୈରବ ମୁଣ୍ଡରେ ବାଡ଼େଇ ଦେଲା ।

ଭୈରବ ଚିତ୍କାର କରି ତଳେ ପଡ଼ି କାନ୍ଥ ପର୍ଯ୍ୟନ୍ତ ଗଡ଼ିଗଲା ।

"ଇଏ ତ ତମର ସେବକ । ଏହାକୁ ଦଣ୍ଡ ଦେଉଛ କାହିଁକି ?" ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ରବର୍ମା ପଚାରିଲେ ।

"ହଁ ଇଏ ମୋର ସେବକ ଠିକ୍, କିନ୍ତୁ ସୁଯୋଗ ପାଇବା ମାତ୍ରେ ଇଏ ମୋର ବିନାଶ ପାଇଁ ଚେଷ୍ଟା କରିବ ଓ ଶଂଖୁ ପାଖକୁ ପଳାଇଯିବ । ଅଧିକାଂଶ ଭୂତଙ୍କ ସ୍ୱଭାବ ସେହିପରି । ସେମାନେ ଯାହା ପାଖରେ ଥିବେ, ତାହାଠୁଁ ବେଶି ବଳଶାଳୀ ମନେ ହେଉଥିବା ତାନ୍ତ୍ରିକ ପାଖକୁ ପଳାଇବାକୁ ଛଟପଟ କରିବେ । ତେଣୁ ମୁଁ ଏହାକୁ ଖଣ୍ଡିଏ ଗେଣ୍ଠିଆ କାଠରେ ପରିଣତ କରି ପାଖରେ ରଖିଥାଏଁ । ତାନ୍ତ୍ରିକ ଶଂଖୁ ମୋର ସନ୍ଧାନ ନେବା ପାଇଁ ଓ ମୋର ହାନି କରିବା ପାଇଁ କେତେଥର କେତେ ଲୋକଙ୍କୁ ପଠାଇଛି । ସେମାନଙ୍କ ଅବସ୍ଥା କ'ଣ ହୋଇଛି ଥରେ ଦେଖିନିଅ ।" ଏହା କହି କାପାଳିକା ତା' ଦ୍ୱାର ଦେଶରେ ମାଳବନ୍ଧି ହୋଇ ଝୁଲୁଥିବା ନର-କପାଳ ଗୁଡ଼ିକ ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କଲା ।

ସେ ନର-କପାଳମାଳ ଉପରେ ଆଖି ପଡ଼ିବା ମାତ୍ରେ ଚନ୍ଦ୍ରବର୍ମା ଥରିଗଲେ । ସେପର୍ଯ୍ୟନ୍ତ ସେ ତାହା ଦେଖି ନଥିଲେ । ଶଂଖୁ କାପାଳିକା ପାଖକୁ ପଠାଇଥିବା ଲୋକଙ୍କ ଅବସ୍ଥା ଯଦି ଏପରି ହୋଇଛି, କାପାଳିକା ଶଂଖୁ ପାଖକୁ ପଠାଉଥିବା ଲୋକର ଅବସ୍ଥା ବି ସେହିପରି ନହେବ ବୋଲି କିଏ କହିବ ?

"କାପାଳିକା ! ତୁମେ ଶଂଖୁ ପାଖକୁ ପଠାଉଥିବା ଚରଙ୍କର ବି ତ ଏପରି ଦୁର୍ଦ୍ଦଶା ହେଉଥିବ !" ଚନ୍ଦ୍ରବର୍ମା ଶଙ୍କିତ କଣ୍ଠରେ ପ୍ରଶ୍ନ କଲେ ।




କାପାଳିନୀ ନାସ୍ତିବାଚକ ଭାବରେ ମୁଣ୍ଡ ହଲାଇ କହିଲା, "ଆଜିଯାଏ ମୁଁ କାହାକୁ ପଠାଇ ନାହିଁ । ଶଂଖୁ ବହୁତ ଶକ୍ତିଶାଳୀ ଠିକ୍, କିନ୍ତୁ ତା' ପାଖରୁ କିଏ ଶଙ୍ଖ ନେଇ ଆସି ପାରିବ, ସେକଥା ବୁଝିଲା ଭଳି ଶକ୍ତି ମୋର ରହିଛି । ଅସମର୍ଥ ଲୋକଙ୍କୁ ମୁଁ ପଠାଇବି କାହିଁକି ? ସେମାନଙ୍କ ପ୍ରାଣ ହାନୀ ହେବ, ଅଥଚ ମୋର କାର୍ଯ୍ୟସିଦ୍ଧି ହେବ ନାହିଁ । ସେଥିପାଇଁ ତ ମୁଁ ଆଜିଯାଏ ତୁମ ପ୍ରତୀକ୍ଷାରେ ଥିଲି । ତୁମେ ନିଶ୍ଚୟ କାର୍ଯ୍ୟ ହାସଲ କରି ନିରାପଦରେ ଫେରି ଆସିବ ।"

"ମୁଁ ଏଡ଼େ ସମର୍ଥ ବୋଲି ତୁମର ଧାରଣା ହେଲା କାହିଁକି ?" ଚନ୍ଦ୍ରବର୍ମା ପଚାରିଲେ ।

"ତୁମେ ଯୁବକ, ସାହସୀ ତଥା ଅସ୍ତ୍ର ବିଦ୍ୟା ଓ ଯୁଦ୍ଧ ବିଦ୍ୟାରେ ନିପୁଣ । ବର୍ତ୍ତମାନ ପୂଷ୍ଟି ତୁମର ଅନ୍ୟ କେହି ସହାୟ ନାହିଁ । ତେଣୁ ତୁମେ ଦୃଢ଼ ଚିତ୍ତରେ ମୋ ପାଇଁ କାମ କରି ପାରିବ । ତୁମେ ଏ କାମ ହାସଲ କଲେ ଖାଲି ଯେ ରାଜ୍ୟ ଫେରି ପାଇବ, ସେତିକି ନୁହେଁ, ତୁମେ ରାଜଚକ୍ରବର୍ତ୍ତୀ ବନିଯିବ । ତାହା କିପରି ଭାବରେ ହେବ, ସେକଥା ଶଙ୍ଖଟି ହସ୍ତଗତ ହେବା ପରେ ତୁମକୁ କହିବି ।" କାପାଳିନୀ କହିଲା ।

କାପାଳିନୀ କଥାରେ ଚନ୍ଦ୍ରବର୍ମାଙ୍କ ମନରେ ଉତ୍ସାହ ଭରିଗଲା । ତେବେ ସବୁ ସନ୍ଦେହ ଯେ ପୁରାପୁରି ଦୂର ହୋଇଗଲା, ତାହା ନୁହେଁ । କାପାଳିନୀ ତା' ନିଜ କାମ ହାସଲ କରିବା ନିମନ୍ତେ ତାଙ୍କୁ ପ୍ରଲୋଭନ ଦେଖାଉ ନାହିଁ ତ ? ଏ ପ୍ରଶ୍ନଟି ମନ ଭିତରେ ରହିଗଲା !

ଚନ୍ଦ୍ରବର୍ମା କହିଲେ, "ବେଶ୍ । ମୁଁ ବର୍ତ୍ତମାନ ଅଭିଯାନରେ ବାହାରିବାକୁ ପ୍ରସ୍ତୁତ । ଶଙ୍ଖୁ ଘରକୁ ଯିବାକୁ ବାଟ ବତାଅ ।"

କାପାଳିନୀ ଚନ୍ଦ୍ରବର୍ମାଙ୍କୁ ଧରି ଘର ଭିତରୁ ବାହାରି ଆସିଲା । ସେତେବେଳେ ସୂର୍ଯ୍ୟ ଅସ୍ତ ଯିବାକୁ ବସିଲେଣି । କାପାଳିନୀ ଉତ୍ତର ଦିଗକୁ ମୁହଁ କରି ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା, "ଏହି ଦିଗରେ ଶହେ ଯୋଜନ ଦୂରରେ ଶଙ୍ଖୁର ନିବାସ । ସେ ନିବାସ ଭିତରେ

ଗୋଟାଏ ନାଗ ସାପ ଅଛି । ଶଙ୍ଖଟି ସେହି ନାଗ ସାପ ଗଳାରେ ବନ୍ଧା ଥିବ । ସାପଟି ଘର କୋଣରେ ଗୋଟାଏ ସ୍ତମ୍ଭ ଦେହରେ ଗୁଡ଼େଇ ହୋଇ ରହିଥିବ । ତମେ ଶଙ୍ଖୁ ସହ କପଟ ବନ୍ଧୁତା କରି ତା' ମନରେ ବିଶ୍ୱାସ ଜନ୍ମାଇ ଦେଇ, ବା ତାକୁ ବଧ କରି ଦେଇ, ଯେମିତି ଭାବରେ ହେଉ ନା କାହିଁକି ଶଙ୍ଖଟି ଆଣିବା ଦରକାର ।"

"ଏଡ଼େ ବଡ଼ ତାନ୍ତ୍ରିକଙ୍କୁ ବଧ କରିବା କ'ଣ ମୋ ପକ୍ଷରେ ସମ୍ଭବ ହେବ ?" ସନ୍ଦିଗ୍ଧ ଭାବରେ ଚନ୍ଦ୍ରବର୍ମା ପଚାରିଲେ ।

"କାହିଁକି ହେବ ନାହିଁ ? ଯେତେବଡ଼ ତାନ୍ତ୍ରିକ ହେଲେ ବି ତ ଦିନେ ନା ଦିନେ ତାକୁ ମରିବାକୁ ପଡ଼ିବ! ତମକୁ ଖୋଦ୍ ଶଙ୍ଖୁ ପାଖରୁ ଜାଣିନେବାକୁ ହେବ ତା' ମୃତ୍ୟୁର ରହସ୍ୟ ।"

"ଆଚ୍ଛା । ଏଥର ମୁଁ ଚାଲିଲି । ଏହା କହି ଚନ୍ଦ୍ରବର୍ମା ଥରେ ନିଜ ପୋଷାକ ଓ ଅସି ଆଡ଼େ ଦୃଷ୍ଟି ପାତ କରି ଯାତ୍ରାରମ୍ଭ ପାଇଁ ଉଦ୍ୟତ ହେଲେ ।

କାପାଳିନୀ ତାଙ୍କ କାନ୍ଧରେ ହାତ ରଖି ତାଙ୍କୁ ରୋକିଦେଇ କହିଲା, "ପୁଅ! ତମକୁ ଗୋଟାଏ କଥା କହିବାକୁ ଭୁଲି ଯାଇଛି । ଶଙ୍ଖୁ ପାଖରେ ଗୋଟାଏ ବିଚିତ୍ର ପକ୍ଷୀ ଅଛି । ତା' ଶବ୍ଦ ଓ ଗତିର ବର୍ଣ୍ଣନା ଦେବା ସହଜ ନୁହେଁ । ତା' ନାମ ଅଗ୍ନି ପକ୍ଷୀ । ସେ ସକାଳଠୁଁ ବଣ ଭିତରକୁ ଚାଲିଯାଏ । ରାତି ଅଧରେ ତାନ୍ତ୍ରିକ ପାଖକୁ ଫେରି ଆସେ । ସେ ଯେତେବେଳେ ଆକାଶ ମାର୍ଗରେ ଯାଉଥାଏ, ସେତେବେଳେ ଅଗ୍ନି ଜଳିବା ଭଳି ଦିଶୁଥାଏ । ସେ ଜ୍ୟୋତି ଅନୁସରଣ କରି ତମେ ନିଶ୍ଚିନ୍ତରେ ତାନ୍ତ୍ରିକର ଘରକୁ ବାଟ ପାଇଯିବ । ତମେ କେତେ ଶୀଘ୍ର କାମ ଶେଷ କରି ଲେଉଟି ଆସି ପାରିବ ବୋଲି ଭାବୁଛ ?"



କାପାଳିନୀର ଏଭଳି ପ୍ରଶ୍ନ ଚନ୍ଦ୍ରବର୍ମାଙ୍କୁ ଅସ୍ୱାଭାବିକ ଲାଗିଲା । ପାହାଡ଼ିଆ ବଣ ରାସ୍ତାରେ ଶଙ୍ଖୁ ଘରେ ପହଞ୍ଚିବାକୁ ହେବ । ପୁଣି ସେ ଭୀଷଣ ତାନ୍ତ୍ରିକଠୁଁ କାମ ହାସଲ କରିବାକୁ

ହେବ ଓ ଦୁର୍ଗମ ପଥ ଅତିକ୍ରମ କରି ପୁନରାୟ ଫେରିବାକୁ ହେବ । ରାସ୍ତାରେ କେତେ ପ୍ରକାର ବାଧାବିଘ୍ନ ଥିବ, ସେକଥା କହିବା ମୁସ୍କିଲ । ଏଭଳି ଅବସ୍ଥାରେ ସେ କେବେ ଫେରିବ ସେକଥା କିପରି କହିବ ?

କାପାଳିନୀ ପୁଣି କହିଲା, "ପୁଅ! ମୁଁ କାହିଁକି ଏ ପ୍ରଶ୍ନ କରୁଛି ତାର ଅର୍ଥ ଅଛି । ବର୍ଷକ ଭିତରେ ଯଦି ତମେ ସେ ଶଙ୍ଖ ଆଣି ଦେଇ ପାରିବ, ତେବେ ତାହା ମୋର କାମ ଦେବ । ତେବେ ତମେ ଯଦି ବର୍ଷକ ଭିତରେ ଫେରି ନ ପାରିବ, ତଥାପି ମୁଁ ତମକୁ ଯେଉଁ ସାହାଯ୍ୟ ଦେବାର ପ୍ରତିଶ୍ରୁତି ଦେଇଛି, ସେଥିରେ ଅନ୍ୟଥା ହେବ ନାହିଁ । ତମେ ଯଦି ଆସି ଦେଖିବ ମୁଁ ନାହିଁ, ତେବେ ଏହି ସ୍ୱଚ୍ଛ ଯାଦୁ ଗୋଲକ ପଛରେ ଖୋଜିବ । ଖଣ୍ଡିଏ ତାଳପତ୍ରରେ ମୁଁ ତମ ପାଇଁ ସବୁ ନିର୍ଦ୍ଦେଶ ରଖିଦେଇ ଯାଇଥିବି । ତମେ ତାହା ଅନୁସରଣ କରିବ ।"

କାପାଳିନୀର ଏ ଅଶ୍ୱାସନା ବାଣୀ ଶୁଣି ଚନ୍ଦ୍ରବର୍ମାଙ୍କ ମନରେ ତା' ପ୍ରତି ଆଉ କୌଣସି ସନ୍ଦେହ ରହିଲା ନାହିଁ । ସେ କାପାଳିନୀର ଦୁଇ ହାତ ଧରି କହିଲେ, "କାପାଳିନୀ! ମୋର ବିଶ୍ୱାସ, ମୁଁ ବର୍ଷେ ଭିତରେ ଫେରି ଆସି ପାରିବି ।". ଏହା ପରେ ସେ ଅଗ୍ରସର ହେଲେ ।

"କାଳ ନାଗ!" କାପାଳିନୀ ଚିତ୍କାର କରି ଡ଼ାକିଲା । ସଙ୍ଗେ ସଙ୍ଗେ ଫୁତ୍କାର କରି ନାଗ ଆସି ପହଞ୍ଚିଗଲା । "ତୁ ଏହାଙ୍କୁ ବଣ ସୀମା ବାହାରକୁ ବାଟ ଦେଖାଇନେଇ ଯା!" ସେ କହିଲା ।

କାଳନାଗ ଆଗେ ଆଗେ ଗଲା । ଚନ୍ଦ୍ରବର୍ମା ତାକୁ ଅନୁସରଣ କଲେ । କିଛିବାଟ ଯାଇ ସେ ବୁଲିପଡି ଅନାଇ ଦେଖନ୍ତି ତ କାପାଳିନୀ, ତା' ଘର, ସବୁ ଅଦୃଶ୍ୟ ହୋଇଗଲାଣି । ସେଠାରେ କେତେଗୁଡିଏ ଭୟାବହ ପଶୁ ଦେଖାଯାଉଛନ୍ତି । ଉପରେ ଉଡୁଛନ୍ତି କେତୋଟି ଚିଲ୍ଲାଣ ।

(କ୍ରମଶଃ)






# ଦୟାର ନିକଷ

ନିଶା ଗରଜୁଥାଏ । ଭୁହାଲୁ ଭୁହା ଶୀତଳ ପବନ ସାଙ୍ଗକୁ ଝିପି ଝିପି ବର୍ଷା ହେଉଥାଏ । ଶ୍ୱାନଶ୍ୱାପଦଙ୍କ ରଡ ଓ ବଜପାତ ଧ୍ୱନି ମଝିରେ ଶୁଭୁଥାଏ ଅଶରୀରି-ମାନଙ୍କ ଅଟ୍ଟହାସ୍ୟ । ପୁଣି ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷ ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମର କ'ଣ ଅଭାବ ଯେ ତମେ. ଏ ଦୁର୍ଯ୍ୟୋଗପୂର୍ଣ୍ଣ ରାତିରେ ଏଭଳି ଶ୍ରମ ସ୍ୱୀକାର କରୁଛ?



କରୁଥିଲା, ତାଙ୍କୁ ମଧ୍ୟ ସେ କ୍ଷମା କରି ଦେଉଥିଲେ ।

ରାମଚନ୍ଦ୍ରଙ୍କ ଘରେ ସୁବଳ ନାମକ ବାଳକ ରହୁଥିଲା । ସେ ଶିଶୁକାଳରୁ ବାପାମା'ଙ୍କୁ ହରାଇଥିଲା । ରାମଚନ୍ଦ୍ରଙ୍କର ଜଣେ ବୃଦ୍ଧା ଚାକର ପିଲାଟିକୁ ପାଳିଥିଲା । ବୃଦ୍ଧାର ମୃତ୍ୟୁ ପରେ ସୁବଳ ରାମଚନ୍ଦ୍ରଙ୍କ ଘରେ ରହି କାମଦାମ କରୁଥାଏ । ରାମଚନ୍ଦ୍ର ଅନ୍ୟ ଚାକରବାକରଙ୍କ ଅପେକ୍ଷା ସୁବଳକୁ ଅଧିକ ସ୍ନେହ କରୁଥାନ୍ତି । ସେ ବି ରାମଚନ୍ଦ୍ରଙ୍କର ବେଶ୍ ବିଶ୍ୱାସଭାଜନ ହୋଇ ଚଳୁଥିଲା ।

ସୁବଳ ଯେତେବେଳେ ଯୁବକ ହେଲା, ସେତେବେଳେ ରାମଚନ୍ଦ୍ର ତା'ପାଇଁ ଗୋଟିଏ ଘର ତୋଳିଦେଲେ ଓ ତାକୁ ବାହା କରାଇଲେ । ସୁବଳ ସ୍ତ୍ରୀ ଆଗରେ ରାମଚନ୍ଦ୍ରଙ୍କର ଗୁଣଗାନ କରିବାରେ କେବେ ବି କ୍ଳାନ୍ତ ହେଉ ନଥାଏ ।

ପ୍ରଥମ କେତେଦିନ ତା' ସ୍ତ୍ରୀ ସବୁ ଶୁଣି ଚୁପ୍‌ଚାପ୍ ରହିଲା । ତା'ପରେ ଦିନେ କହିଲା, "ତମେ ତ ସାଧୁବାବୁଙ୍କର ଏତେ ପ୍ରଶଂସା କରୁଛ । କିନ୍ତୁ ତମେ ତାଙ୍କର ଚାକର ଛଡ଼ା ଆଉ କ'ଣ ?"

ଏ ମନ୍ତବ୍ୟ ଶୁଣି ସୁବଳ ପ୍ରଥମେ କିଛି କହିପାରିଲା ନାହିଁ । ତା'ପରେ କହିଲା, "ତୁମେ କ'ଣ ବୁଝାଉଛ ? ସାଧୁବାବୁ କ'ଣ ମୋ ସହ ଚାକର ଭଳି ବ୍ୟବହାର କରନ୍ତି ନାହିଁ, ପୁଅ ଭଳି ବ୍ୟବହାର କରନ୍ତି !"

ତାହା ପ୍ରତି ଦୟା ବହି ସିନା ତମେ ଏ କାମ ହାତକୁ ନେଇଛ ! ଦୟା ଅବଶ୍ୟ ଗୋଟିଏ ମହତ୍ ଗୁଣ । କିନ୍ତୁ ଅପାତ୍ରରେ ଦୟା କରିବା ଭଲ ବୋକାମୀ ନକଲେ ହେଲା । ଖୁବ୍ ଭଲ ଲୋକମାନେ ମଧ୍ୟ ଏଭଳି ବୋକାମୀ କରିବାର ଦୃଷ୍ଟାନ୍ତ ଅଛି । ଗୋଟିଏ ଘଟଣା କହୁଛି, ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।

ବେତାଳ ଗପିଲା : ବହୁଦିନ ତଳର କଥା । ସୁଭଦ୍ର ନଗରୀର ଅଦୂରରେ ରହୁଥିଲେ ଜଣେ ଧର୍ମୀକ, ରାମଚନ୍ଦ୍ର ସାଧୁ । ସେ ଥିଲେ ଅତ୍ୟନ୍ତ ଦୟାଳୁ । ଆଖପାଖର ଲୋକଙ୍କର ଉପକାର କରିବା ସଙ୍ଗେ ସଙ୍ଗେ ତାଙ୍କର ଯିଏ ଅପକାର



"ପୁଅ ଭଲ! ଆହା! ତମେ ତାଙ୍କର କେଉଁ ପୁଅ ସେକଥା ତମ ବେଶଭୂଷା ଦେଖିଲେ, ତମ ସ୍ତ୍ରୀର ବେଶଭୂଷା ଦେଖିଲେ ବୁଝି ହେଉନାହିଁ? ତମ ସ୍ତ୍ରୀ ଦେହରେ ହେଇଟି ବନାରସୀ ସାଢ଼ୀ, ହାତରେ ସୁନା ଚୁଡ଼ି, ଗଳାରେ ହୀରା ମୋତିର ହାର!" ଅଭିମାନିଆ କଣ୍ଠରେ କହିଲା ସୁବଳର ସ୍ତ୍ରୀ।

"ମୁଁ ମୋ ମେହେନତିରୁ ଯାହା ପାଇବା କଥା, ରାୟବାବୁ ତାହାଠୁଁ ବହୁତ ବେଶି ମୋତେ ଦେଇଛନ୍ତି।"

"ବହୁତ ବେଶି ଦେଇ ତ ଲୁଡ଼ଆଠାଏ କରି ଦେଇଛନ୍ତି! ଶୁଣ, ଜୀବନରେ ଯଦି ଉନ୍ନତି କରିବାକୁ ଚାହେଁ, ସେ ଏପରି ନିରୀମାଖି ହୋଇ ରହିଲେ ଚଳିବ ନାହିଁ। ତମେ ରାୟବାବୁଙ୍କଠୁଁ ଅଲଗା ହୋଇ ଆସ। ବେପାର ଧନ୍ଦା କରି ବଡ଼ଲୋକ ହୁଅ।" ସ୍ତ୍ରୀ କହିଲା।

"ସେପାଇଁ ଟଙ୍କା କେଉଁଠୁ ପାଇବ?" ସୁବଳ ପଚାରିଲା।

"ଶୁଣ," କଣ୍ଠ ନମ୍ର କରି ସୁବଳର ସ୍ତ୍ରୀ କହିଲା, "ରାୟବାବୁଙ୍କର ଅଭାବ କ'ଣ? ତମେ ଧର ତାଙ୍କ ଘରୁ କିଛି ଟଙ୍କା ନେଇ ଆସିଲ, ସେଥିରେ ତାଙ୍କର ତ କୌଣସି କ୍ଷତି ହେବ ନାହିଁ, ବରଂ ଆମର ଭାଗ୍ୟ ବଦଳିଯିବ।"

"ଚୋରି କରିବ?" ଚମକିପଡି ସୁବଳ ପଚାରିଲା।

"ତାକୁ ଚୋରି ବୋଲି କାହିଁକି କହିବ? ରାୟବାବୁଙ୍କର ତମେ ଯେତେ ସେବା କଲଣି, ସେ ବାବଦରେ ହଜାରେ ଦୁଇହଜାର ଟଙ୍କା ତମର ପ୍ରାପ୍ୟ।"

"ନା, ନା, ଏଭଳି କଥା କୁହନାହିଁ। ମୁଁ ତାଙ୍କ ସହ ବିଶ୍ୱାସଘାତକତା କରିପାରିବି ନାହିଁ।" ସୁବଳ ବ୍ୟସ୍ତ ହୋଇ କହିଲା।

"ଆରେ, ଏହାକୁ ବିଶ୍ୱାସଘାତକତା ବୋଲି ଭାବୁଛ କାହିଁକି? ଦିନେ ଯେତେବେଳେ ଆମର ଯଥେଷ୍ଟ ଟଙ୍କା ପଇସା ହୋଇଯିବ, ସେତେବେଳେ କ'ଣ ଆମେ ତାଙ୍କ ଋଣ ପରିଶୋଧ କରିଦେଇ ପାରିବା ନାହିଁ?" ସ୍ତ୍ରୀ କହିଲା।

ସୁବଳ ପ୍ରଥମେ ଏ ପ୍ରସ୍ତାବରେ ଅତ୍ୟନ୍ତ ନାରାଜ ହେଲା । କିନ୍ତୁ କ୍ରମେ ସେ ପ୍ରଭାବିତ ହୋଇଗଲା । ଦିନେ ରାମଚନ୍ଦ୍ର ରାୟଙ୍କ ଘରର ଅଧିକାଂଶ ଲୋକେ ଯାତ୍ରା ଦେଖିବାକୁ ଯାଇଥିବା ବେଳେ ସେ ଘର ଭିତରେ ପଶି ବାକ୍ସ ସିନ୍ଦୁକ ସବୁ ଦେଖିଲା । ଗୋଟାଏ ସିନ୍ଦୁକ ତା' ଚାବିରେ ଖୋଲିଗଲା । ତହିଁ ଭିତରେ ଗୋଟାଏ ଟଙ୍କା ପୁଟୁଳି ଥିଲା । ସେ ତାହା ଉଠାଇ ଆଣିଲା । ତରତରରେ ଘରକୁ ଆସି ସ୍ତ୍ରୀକୁ ତାହା ଦେଖାଇଲା । କବାଟ କିଳି ସେମାନେ ଟଙ୍କା ଗଣିଲେ । ଦେଖିବା ବେଳକୁ ଅଢ଼େଇ ହଜାର ଟଙ୍କା ।

ହଠାତ୍ ସେଠାରୁ ଅନ୍ୟତ୍ର ଚାଲିଗଲେ କାଳେ କାହାର ସନ୍ଦେହ ହେବ, ସେଥିପାଇଁ ସେମାନେ କିଛିଦିନ ଅପେକ୍ଷା କରିବାକୁ ସ୍ଥିର କଲେ ।

ପରଦିନ ଟଙ୍କା ଚୋରି କଥା ଜଣା ପଡ଼ିଗଲା । ରାମଚନ୍ଦ୍ର ବୁଝି ପାରିଲେ, ବାହାରୁ ଚୋର ଆସି ନେଇ ନାହିଁ, ନିଜ କର୍ମଚାରୀଙ୍କ ଭିତରୁ କେହି ନେଇଛି । ସେ ସମସ୍ତଙ୍କୁ ଡକାଇ କହିଲେ, "ଦେଖ, ମୁଁ ତମମାନଙ୍କର କାହାରି କିଛି ଅନ୍ୟାୟ କରିନାହିଁ । ଯଥାସାଧ୍ୟ ତମମାନଙ୍କୁ ସାହାଯ୍ୟ ଦେଖାଇଛି । ତମ ଭିତରୁ କିଏ ଏଡ଼େ ଅନ୍ୟାୟ କରି ପାରିଲା ?"

ସମସ୍ତେ ମୁଣ୍ଡ ତଳକୁ କରି ଠିଆ ହୋଇ ରହିଲେ । ରାୟବାବୁ ଚାଲିଯିବା ପରେ ଜଣେ କହିଲା, "ଆମେ ସମସ୍ତେ ମିଶି ଚାଲ ଆମ ସମସ୍ତିଙ୍କ ଘର ତଲାସ୍ କରିବା ।" ଏଥିରେ



ସଙ୍ଗେ ସଙ୍ଗେ ସମସ୍ତେ ଏକମତ ହେଲେ—ଏକା ସୁବଳକୁ ଛାଡ଼ି । ସେ ନୀରବ ରହିବାର ଦେଖି ସମସ୍ତେ ପ୍ରଥମେ ତାହାର ଘରକୁ ଚାଲିଲେ । ଅଳ୍ପ ସମୟ ଭିତରେ ଟଙ୍କା ଥଳି ମିଳିଗଲା ।

ରାୟବାବୁ ଆଶ୍ଚର୍ଯ୍ୟ ହେଲେ । ସେ ଏକାନ୍ତରେ ସୁବଳକୁ ଡାକି କହିଲେ, "ବାପା! ତୁ ଏ ଟଙ୍କାତକ ନେଇ ଏଠାରୁ ଚାଲିଯିବାକୁ ବସିଥିଲୁ ?"

ସୁବଳ ମୁଣ୍ଡ ତଳକୁ କରି ଠିଆ ହୋଇ ରହିଲା ।

"ତୁ ଯେପରି ସରଳ ଯୁବକ, ସେଥିରେ ଆଉ କୁଆଡ଼େ ଯାଇ ତୁ ଭଲରେ ଚଳି ପାରିବୁ, ସେଭଳି ବିଶ୍ୱାସ ମୋର ନାହିଁ । ତୁ ଏଇଠି ରହିଥା ।" ରାୟବାବୁ କହିଲେ ।

"ନା, ଆଜ୍ଞା, ଦୂରକୁ ଚାଲିଯିବାହିଁ ମୋ ପକ୍ଷରେ ଭଲ ହେବ । ନହେଲେ ଅନ୍ୟମାନେ ଭାବିବେ ଯେ ସେମାନେ ବି ଆପଣଙ୍କ ଘରୁ ଚୋରି କରି ସୁରୁଖୁରୁରେ ଆପଣଙ୍କ ଘରେ ରହିପାରିବେ ।" ସୁବଳ କହିଲା ।

"ସେଥିରେ କିଛି ଯାଏ ଆସେ ନାହିଁ । ତେବେ, ତୁ ଯଦି ଯିବାକୁ ଚାହୁଁଛୁ, ଯାଇପାରୁ ।" ଏହା କହି ସେ ସୁବଳକୁ ସେ ଟଙ୍କାଥଳିଟି ଦେଇ ଦେଲେ । ସୁବଳ ଚାଲିଗଲା ।

ଏହାପରେ ଅନେକ ବର୍ଷ ବିତିଗଲା । ରାୟବାବୁ କ୍ରମେ ବାର୍ଦ୍ଧକ୍ୟରେ ଉପନୀତ ହେଲେ । ଦିନେ ରାତିରେ ତାଙ୍କ ଘରେ ଚୋର ପଶିଛି ବୋଲି ହଠାତ୍ ଜଣା ଯିବାରୁ ସମସ୍ତେ ଚୋର ଧରିବାକୁ ଚେଷ୍ଟା କଲେ ଓ ଚୋର





ସହଜରେ ଧରା ପଡ଼ିଗଲା । ସେ ପ୍ରାୟ ଅଠର ବର୍ଷର ଗୋଟିଏ ତରୁଣ । ତାକୁ ଯେତେବେଳେ ରାୟବାବୁଙ୍କ ଆଗକୁ ଅଣାଗଲା, ସେ କାନ୍ଦିଲା । ରାୟବାବୁ ଅନ୍ୟମାନଙ୍କୁ ସେଠାରୁ ଚାଲିଯିବାକୁ କହି ତରୁଣକୁ ପଚାରିଲେ, "ତମେ କିଏ ?"

"ଆଜ୍ଞା! ଅନେକ ବର୍ଷ ତଳେ ଆପଣଙ୍କ ଘରେ ସୁବଳ ବୋଲି ଜଣେ ଲୋକ ପ୍ରତିପାଳିତ ହୋଇଥିଲେ । ମୁଁ ତାଙ୍କର ପୁଅ ।" ତରୁଣ କହିଲା ।

ରାୟବାବୁଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ତରୁଣକୁ ପ୍ରଶ୍ନ କରି କରି ବୁଝିଲେ, ସୁବଳ ଅନେକ ପ୍ରକାର ବେପାର ବଣିଜ କରି ଧନ ଆୟ କରିବାକୁ ଚେଷ୍ଟା କରି ସବୁଥିରେ ବିଫଳ ହୋଇଛି । ଗତ ବର୍ଷେ ହେବ ସେ କୌଣସି ରୋଗରେ ଶଯ୍ୟାଶାୟୀ । ତା' ସ୍ତ୍ରୀ ଯେତେବେଳେ ପୁଅକୁ ଚୋରି କରିବାକୁ ପରାମର୍ଶ ଦିଏ, ସେତେବେଳେ ସୁବଳ ସେଥିରେ ପ୍ରବଳ ଆପତ୍ତି କରେ । କିନ୍ତୁ ଅବଶେଷରେ ଦୁଇଦିନ ଧରି ଘରେ ଚୁଲ୍ ନ ଜଳିବା ଫଳରେ ପୁଅ ଚୋରି କରିବାକୁ ବାହାରିଲା । ସେତେବେଳେ ସୁବଳ ପୁଅକୁ କହିଲା, "ତୁ ଆଉ କୁଆଡ଼େ ନଯାଇ ସୁଭଦ୍ର ନଗରୀ ପାଖରେ ଥିବା ରାମଚନ୍ଦ୍ର ରାୟଙ୍କ ଘରେ ପଶିବୁ ଯା' ।" ସେହି କଥା ମାନି ପୁଅ ଆସିଥିଲା ।

ରାୟବାବୁ ଚୁପ୍ ରହିଲେ । ସକାଳେ ସେ ନିଜେ ଯାଇ ସୁବଳର ଚିକିତ୍ସାର ବ୍ୟବସ୍ଥା କଲେ ଓ ତା' ପୁଅକୁ ନିଜ ଘରେ ଚାକିରି ଦେଲେ ।

ବେତାଳ ଟିକିଏ ନୀରବ ରହି ତା'ପରେ ମୁକାବିଲା କଲାଭଳି କଣ୍ଠରେ ପ୍ରଶ୍ନ କଲା, "ରାଜା! ରାମଚନ୍ଦ୍ର ରାୟଙ୍କ ସ୍ୱଭାବ ବିଚିତ୍ର ନୁହେଁ କି ? ଯଦି ସୁବଳ ପ୍ରତି ତାଙ୍କର ଏତେ ଆକର୍ଷଣ ଥିଲା, ତେବେ ତାକୁ ଟଙ୍କା ପଇସା ନେଇ ଯିବାକୁ ଅନୁମତି ଦେଲେ କାହିଁକି ? ଯେଉଁ ସୁବଳ ଏଡ଼େ କୃତଘ୍ନ ଯେ ସେ ରାୟବାବୁଙ୍କ ଭଳି ହିତାକାଂକ୍ଷୀ ଘରେ ଚୋରି କରିବାକୁ ପୁଅକୁ ପଠାଇଦେଲା, ସେ ସୁବଳ ପ୍ରତି ସେ ପୁଣି ଏତେ ଦୟା ଦେଖାଇବା ଦୁର୍ବଳତା ଛଡ଼ା ଆଉ କ'ଣ ? ରାଜା!

ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶୀର ହେବ ଖଣ୍ଡବିଖଣ୍ଡିତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ରାମଚନ୍ଦ୍ର ରାୟଙ୍କ ସ୍ୱଭାବ ବିଚିତ୍ର ନୁହେଁ, ତେବେ ସେ ବିରଳ ମହତ୍ତ୍ୱ ସମ୍ପନ୍ନ ବ୍ୟକ୍ତି । ସେ ସୁବଳକୁ ଚାଲିଯିବାକୁ ଅନୁମତି ଦେବାର କାରଣ, ସେଠି ରହିଲେ ଅନ୍ୟମାନେ ତାକୁ ଚୋର ବୋଲି ଅଛିା କରିବେ ଓ ସେଥିରେ ସୁବଳର ଜୀବନ ଦୁର୍ବିସହ ହେବ । ସୁବଳ ପ୍ରତି ତାଙ୍କର ଯେ ବିପୁଳ ସ୍ନେହ ଥିଲା, ସେଥିରେ ସନ୍ଦେହ ନାହିଁ ।

"ସୁବଳ ତା' ପୁଅ ଚୋର ହେଉ ବୋଲି ଚାହୁଁ ନଥିଲା । କିନ୍ତୁ ସେ ଶଯ୍ୟାଶାୟୀ ଥାଇ ସେ ଦିଗରେ କେତେଦୂର ବାଧା ଦେଇ ପାରନ୍ତା ? ଯେତେବେଳେ ସେ ବୁଝିଲା ଯେ ପୁଅ ଚୋରି କରିବାକୁ ଯିବହିଁ ଯିବ, ସେତେବେଳେ ସେ ତାକୁ ରାୟବାବୁଙ୍କ ଘରକୁ ଯିବାକୁ କହିବାର ଏକ ବିଶେଷ କାରଣ ଥିଲା । ସେ ସନ୍ଦେହ କରୁଥିଲା ଯେ ତା' ଅନଭିଜ୍ଞ ପୁଅ ଧରା ପଡିଯିବ । ରାୟବାବୁଙ୍କ ଘରେ ଧରା ପଡ଼ିଲେ ପୁଅ ମାଡ଼ରୁ ରକ୍ଷା ପାଇବ । କାରଣ ରାୟବାବୁ ଅତ୍ୟନ୍ତ ଦୟାଳୁ ବ୍ୟକ୍ତି । ଅର୍ଥାତ୍ ରାୟବାବୁଙ୍କ ଘରକୁ ଚୋରି କରିବାକୁ କହି ସେ ରାୟବାବୁଙ୍କ ମହତ୍ତ୍ୱକୁ ସ୍ୱୀକାର କରୁଥିଲା । ରାୟବାବୁ ସୁବଳର ଏହି ମନୋଭାବ ଠିକ୍ ବୁଝି ପାରିଥିଲେ । ସେ ଯେ ସୁବଳର ଚିକିତ୍ସା ପାଇଁ ବ୍ୟବସ୍ଥା କଲେ, ଏହା ତାଙ୍କ ମହତ୍ତ୍ୱର ପରିଚୟ, ଦୁର୍ବଳତାର ନୁହେଁ । ତା' ପୁଅକୁ ଚାକିରି ଦେବାର କାରଣ ସେ ଟୋକା ଅଭାବ ତାଡ଼ନାରେ ଯେପରି ଚୋର ହୋଇଥିଲା, ସେହିପରି ଭିନ୍ନ ଅବସ୍ଥାରେ ଭଲ ମଣିଷ ହୋଇପାରିବ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡିଲା ।

(କଳ୍ପିତ)



# ରଙ୍ଗ !

ଶ୍ରୀପୁରର ଜମିଦାର ଗୋଟାଏ ନୂଆ ଅତିଥି ଭବନ ତିଆରି କରିଥାନ୍ତି । ସେଥିରେ ସେଯାଏ କେହି ରହି ନଥାନ୍ତି । ଜମିଦାର ଓ ତାଙ୍କ ସ୍ତ୍ରୀମାନଙ୍କ ପାଇଁ ତୀର୍ଥ ଭ୍ରମଣ କରିବାକୁ ବାହାରିଥିବା ବେଳେ ଜଣେ ତରୁଣ ଆସି ତାଙ୍କୁ କହିଲା, "ମହାଶୟ, ମୁଁ ମୋ ବାପାଙ୍କ ଚିକିତ୍ସା ପାଇଁ ଏଠାକୁ ଆସିଛି । ଏଠାକାର କବିରାଜ ତାଙ୍କ ଚିକିତ୍ସା କରୁଛନ୍ତି । ମୋତେ ମାସେ ରହିବାକୁ ପଡ଼ିବ । ଆପଣଙ୍କ ଅତିଥି ଭବନ ତ ଖାଲି ପଡ଼ିଛି । ରହି ପାରିବି କି ?"

ଜମିଦାର ଭାବିଲେ, ଟୋକା ଖାଲିଟାରେ କାହିଁକି ରହିବ, କିଛି କାମ କରୁ ! ସେ କହିଲେ, "ତୁମେ ରହିପାର । କିନ୍ତୁ ସେ ପାଇଁ ତୁମକୁ କିଛି ଶ୍ରମ ଦାନ କରିବାକୁ ହେବ । ଅତିଥି ଭବନର ଭିତର ପଟ ସ୍ତମ୍ଭ ଗୁଡ଼ିକରେ ଯେଉଁ ରଙ୍ଗ ଲାଗିଛି, ତାହା ମୋ ମନକୁ ପାଉ ନାହିଁ ତା' ଉପରେ ଅନ୍ୟ ରଙ୍ଗ ବୋଳିବାକୁ ହେବ । ଦୈନିକ ଘଣ୍ଟାଏ ଲେଖା ପରିଶ୍ରମ କଲେ ମାସକ ଭିତରେ ଏ କାମ କରି ପାରିବ । ଠିକ ?"

"ଆଜ୍ଞା ହଁ । କିଭଳି ରଙ୍ଗ ଦେବାକୁ ହେବ ?" ତରୁଣ ପଚାରିଲା । ଜମିଦାର ତାକୁ ଗୋଟାଏ ଛୋଟିଆ ବାକ୍ସ ଧରାଇ ଦେଇ କହିଲେ, "ଏହି ବାକ୍ସ ଦେହରେ ଯେପରି ରଙ୍ଗ ବୋଳା ଯାଇଛି, ସେହିପରି ।"

ମାସକ ପରେ ଜମିଦାର ଆସିଲେ । ଯୁବକ ତାଙ୍କୁ କହିଲା, "ଦେଖନ୍ତୁ, ଆପଣଙ୍କ ନିର୍ଦ୍ଦେଶ ଅନୁସାରେ କାମ କରିଛି ।" ଏହା କହି ସେ ବାକ୍ସଟି ଫେରାଇ ଦେଲା । ଜମିଦାର ଦେଖିଲେ, ବାକ୍ସର ରଙ୍ଗ ଓ ସ୍ତମ୍ଭ ଗୁଡ଼ିକର ରଙ୍ଗ ଏକା । ସେ ଖୁସି ହୋଇ ତରୁଣକୁ ପୁରସ୍କାର ଦେଲେ । ତରୁଣ ବିଦାୟ ହୋଇ ଚାଲିଗଲା ।

ଉପରଓଳି ଜମିଦାରଙ୍କ ସ୍ତ୍ରୀ ସବୁ ଶୁଣି ଥରେ ସ୍ତମ୍ଭ ଗୁଡ଼ିକ ଆଡ଼େ ଓ ଥରେ ବାକ୍ସଟି ଆଡ଼େ ଅନାଇ ହସି ପକାଇଲେ । ସେ ବୁଝାଇ ଦେଲେ, ତରୁଣ ସ୍ତମ୍ଭ ସବୁ ରଙ୍ଗ କରିନାହିଁ । ସ୍ତମ୍ଭ ସବୁର ରଙ୍ଗ ଅନୁସାରେ ବାକ୍ସଟି ରଙ୍ଗାଇ ଦେଇଛି !





# ରାଜକୁମାରୀଙ୍କ ବିଷାଦ

କୁସୁମପୁରର ମହାରାଜା ମନୋହର ସିଂହ ବଡ଼ କଳାପ୍ରେମୀ ଥିଲେ । ତାଙ୍କର ଏକମାତ୍ର କନ୍ୟା ସ୍ୱର୍ଣ୍ଣଲତା ଚିତ୍ରବିଦ୍ୟା ପ୍ରତି ଅତ୍ୟନ୍ତ ଅନୁରାଗୀ ହେବାର ଲକ୍ଷ୍ୟ କରି ରାଜା ତାଙ୍କ ରାଜ୍ୟର ଶ୍ରେଷ୍ଠ ଚିତ୍ରକାରଙ୍କୁ ରାଜକନ୍ୟାଙ୍କ ଶିକ୍ଷକ ରୂପେ ନିଯୁକ୍ତ କଲେ ।

ରାଜକନ୍ୟା ଚିତ୍ରବିଦ୍ୟାରେ ନିମଗ୍ନ ରହିଲେ ।

ଦିନେ ଚିତ୍ର-ଶିକ୍ଷକ ଆସି ରାଜାଙ୍କୁ କହିଲେ, "ମହାରାଜ! ଆପଣ ବିଶ୍ୱାସ କରନ୍ତୁ, ରାଜକନ୍ୟାଙ୍କୁ ଅଧିକ ଶିକ୍ଷା ଦେଲଭଳି ବିଦ୍ୟା ମୋତେ ଆଉ ଜଣାନାହିଁ । ବର୍ତ୍ତମାନ ସେ ଚିତ୍ରକର ହିସାବରେ ମୋଠାରୁ କୌଣସି ଗୁଣରେ ଊଣା ନୁହନ୍ତି ।"

ମହାରାଜା ଅନ୍ତଃପୁରକୁ ଯାଇ ରାଜକନ୍ୟାଙ୍କ କୃତିତ୍ୱ ଦେଖିଲେ ଓ ଖୁସି ହୋଇ ଚିତ୍ରଶିକ୍ଷକଙ୍କୁ ଯଥେଷ୍ଟ ପୁରସ୍କାର ଦେଇ ବିଦାୟ କଲେ ।

କିଛିଦିନ ବିତିଗଲା । ରାଜକନ୍ୟା ଗୋଟିଏ ଚିତ୍ର ଆଙ୍କିବାରେ ବ୍ୟସ୍ତ ଥାନ୍ତି । ସେ ଖାଇବା ପିଇବା ଭୁଲିଯାଇ ସେହି ଅଙ୍କନକୁ ଧରି ବସିଥାନ୍ତି ।

ଦିନେ ଚିତ୍ରାଙ୍କନ ଶେଷ ହେଲା । ରାଜକନ୍ୟା ଖୁସି ହେବା କଥା । କିନ୍ତୁ ତାହା ନହୋଇ ସେ ଅଶ୍ରୁପାତ କରିବାର ଦେଖାଗଲା । ଚିତ୍ରରେ ଜଣେ ଯୁବକ ଗୋଟିଏ ଅଶ୍ୱାରୋହଣ କରି ଯାଉଥିବାର ଦେଖା ଯାଉଥିଲା । ସେ ଚିତ୍ର ଆଡ଼େ ଅନାଇ ରାଜକନ୍ୟା କାହିଁକି ମନଦୁଃଖ କରିବେ, ସେକଥା ତାଙ୍କ ସଖିମାନେ ଠଉରାଇ ପାରିଲେ ନାହିଁ । ସଦାବେଳେ ରାଜକନ୍ୟା ଉଦାସ ହୋଇ ବସି ରହୁଥା'ନ୍ତି । କୌଣସି ଜିନିଷ ପ୍ରତି ସେ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ଏପରିକି ଖାଦ୍ୟ ପ୍ରତି ମଧ୍ୟ ସେ ସର୍ବଦା ଉଦାସୀନ ରହିଲେ ।



ରାଜକନ୍ୟାଙ୍କ ସ୍ୱାସ୍ଥ୍ୟ କ୍ରମେ ଖରାପ ହେବାର ଦେଖାଗଲା ।

ରାଜା ଏଥିରେ ବହୁତ ଚିନ୍ତିତ ହେଲେ । ମନ୍ତ୍ରୀ ତାଙ୍କୁ କହିଲେ, "ମହାରାଜ! ମୋର ଧାରଣା, ଚିତ୍ରଟି ରାଜକନ୍ୟାଙ୍କର ମନୋମତ ହୋଇ ନାହିଁ । କୌଣସି ତ୍ରୁଟି ରହିଯାଇଛି । ସଚ୍ଚା ଶିଳ୍ପୀ ନିଜ ଚିତ୍ର ସମ୍ପୂର୍ଣ୍ଣ ମନୋମତ ନହେଲେ ଶାନ୍ତି ପାଏ ନାହିଁ । ଆପଣ ତାଙ୍କ ଶିକ୍ଷକଙ୍କୁ ଡକାଇ ଚିତ୍ରଟି ପରୀକ୍ଷା କରିବାକୁ କୁହନ୍ତୁ ।"

ରାଜା ଚିତ୍ର-ଶିକ୍ଷକଙ୍କୁ ଡକାଇଲେ । ସେ ଆସି ରାଜାଙ୍କଠାରୁ ସବୁ ହାଲ୍ ଶୁଣି ରାଜକନ୍ୟାଙ୍କ ଚିତ୍ରାଙ୍କନ ପ୍ରକୋଷ୍ଠକୁ ଯାଇ ଚିତ୍ରଟି ଅନେକ ସମୟ ଯାଏ ଦେଖିଲେ ଓ ରାଜକନ୍ୟାଙ୍କୁ କହିଲେ, "ମା! ଏପରି ସୁନ୍ଦର ଓ ସମ୍ପୂର୍ଣ୍ଣ ଚିତ୍ର ମୁଁ ଆଜିଯାଏ ଅଙ୍କନ କରି ପାରି ନାହିଁ । ତୁମେ ଧନ୍ୟ, ତୁମକୁ ଚିତ୍ର ଶିକ୍ଷା ଦେଇଥିବା ଯୋଗୁଁ ମୁଁ ଧନ୍ୟ ।"

ଶିକ୍ଷକଙ୍କର ଏ ଅଭିନନ୍ଦନବାଣୀ ଶୁଣି ରାଜକନ୍ୟା ଖୁସି ହେବେ କ'ଣ, ଆହୁରି କାନ୍ଦିଲେ ।

ଚିତ୍ରଯୋଗୁ ସେ କାନ୍ଦୁଥିଲେ ବୋଲି ଚିତ୍ର-ଶିକ୍ଷକ ଆସିଲେ ଅଥଚ ତାଙ୍କ ମନକଥା ବୁଝିପାରିଲେ ନାହିଁ । କାରଣ ରାଜକୁମାରୀ ଖୁବ୍ କମ୍ କଥା କୁହନ୍ତି । ଶିକ୍ଷକ ବହୁତ ପ୍ରକାର ଚେଷ୍ଟାକରି ମଧ୍ୟ ଶେଷରେ ବିଫଳ ମନୋରଥ ହୋଇ ଫେରି ଆସିଲେ ।

ଚିତ୍ର-ଶିକ୍ଷକ ବିଦାୟ ନେଇ ଚାଲିଗଲେ । ଆହୁରି କିଛିଦିନ ଗଲା । ରାଜକନ୍ୟାଙ୍କ ମନୋଭାବରେ କୌଣସି ପରିବର୍ତ୍ତନ ହେଲା ନାହିଁ । ଦିନେ ରାଣୀଙ୍କର ଜଣେ ବାନ୍ଧବୀ ରାଣୀଙ୍କୁ କହିଲେ, "ତମ ଝିଅ ବୋଧହୁଏ କୌଣସି ଯୁବକକୁ ବିଭା ହେବାକୁ ଚାହେଁ । ସେହି ଯୁବକର ଛବି ସେ ଆଙ୍କିଛି । ତାକୁ କୌଣସି କାରଣରୁ ବିଭା ହୋଇ ପାରିବ ନାହିଁ ବୋଲି ବୁଝି ସେ ଏପରି ଭାଙ୍ଗି ପଡ଼ୁଛି ।"

ରାଣୀ ଏକଥା ରାଜାଙ୍କୁ କହିଲେ । ରାଜା ଯାଇ ରାଜକନ୍ୟାଙ୍କୁ ପଚାରିଲେ, "ଝିଅ! ତୁ କ'ଣ କୌଣସି ଯୁବକକୁ ବିଭା ହେବାକୁ

ଭାବୁଛୁ ଏବଂ ମୁଁ ସେଥିରେ ବାଧା ଦେବି ବୋଲି ସନ୍ଦେହ କରୁଛୁ? କଦାପି ନୁହେଁ । ମୁଁ ତୋ ଇଚ୍ଛା ପୂରଣ ହେବା ବାଟରେ ପ୍ରତିବନ୍ଧକ ହେବି ନାହିଁ । କହ, କିଏ ସେ ଯୁବକ ।"

ରାଜକନ୍ୟା ପୁଣି କାନ୍ଦିଲେ ଓ କହିଲେ, "ବାପା! ତୁମ ମନରେ ଏଭଳି ଧାରଣା କାହିଁକି ହେଲା? ଏହା ଭୁଲ । ସେଭଳି କୌଣସି ଇଚ୍ଛା ମୋ ମନରେ ନାହିଁ ।"

ରାଜା ଯାଇ ମନ୍ତ୍ରୀଙ୍କୁ ଏକଥା କହିଲେ । ମନ୍ତ୍ରୀ ଅନେକ ଚିନ୍ତା କରି ପ୍ରସ୍ତାବ ଦେଲେ, "ମହାରାଜ, ଏଣିକି ରାଜ୍ୟରେ ଢେଙ୍ଗୁରା ଦିଆଯାଉ । ଯିଏ ରାଜକନ୍ୟାଙ୍କ ବିଷାଦ ଦୂର କରିଦେଇ ପାରିବ, ସିଏ ଯଥେଷ୍ଟ ସମ୍ମାନ ଓ ପୁରସ୍କାର ଲାଭ କରିବ । ହୁଏତ ଏହା ଦ୍ୱାରା କିଛି ଫଳ ହେବ ।"

ମନ୍ତ୍ରୀଙ୍କ ପ୍ରସ୍ତାବ ଅନୁସାରେ ଘୋଷଣା କରାଗଲା । କେତେ ଚିକିତ୍ସକ, କବିରାଜ ଓ ବିଦ୍ୱାନ ଆସି ରାଜକନ୍ୟାଙ୍କ ସହ କଥାବାର୍ତ୍ତା କରି ତାଙ୍କ ବିଷାଦର କାରଣ ନିର୍ଣ୍ଣୟ କରିବାର ଉଦ୍ୟମ କଲେ, କିନ୍ତୁ ସଫଳ ହେଲେ ନାହିଁ ।

ଦିନେ ଅନ୍ୟ ଏକ ରାଜ୍ୟରୁ କୁସୁମପୁର ବୁଲି ଆସିଥିବା ଜଣେ ଯୁବକ ରାଜାଙ୍କୁ ଭେଟି ରାଜକନ୍ୟାଙ୍କ ସହ କଥାଭାଷା ହେବାର ଇଚ୍ଛା ପ୍ରକାଶ କଲେ । ରାଜା ସେତେବେଳକୁ ବିରକ୍ତ ହୋଇଗଲେଣି । ସେ କହିଲେ, "ବାବୁ,



ତମେ କ'ଣ ଚିକିତ୍ସା ବିଦ୍ୟାରେ ଅଥବା ଚିତ୍ର ବିଦ୍ୟାରେ ଜଣେ ଓସ୍ତାଦ୍?"

"ନା ଆଜ୍ଞା, ମୁଁ ଯଦୁଗିରି ରାଜ୍ୟର ରାଜାଙ୍କ ଦରବାରରେ ମୁଖ୍ୟ ନୃତ୍ୟ ଓ ସଙ୍ଗୀତଗୁରୁ । ମୋ କାମରୁ କେତେମାସ ଅବ୍ୟାହତି ନେଇ ଅନ୍ୟାନ୍ୟ ରାଜ୍ୟ ବୁଲି ବାହାରିଛି ।" ଯୁବକ ଉତ୍ତର ଦେଲେ ।

ରାଜା ତାଙ୍କୁ ବିଦାୟ କରିଦେବାକୁ ବସିଥିଲେ, ତେବେ ମନ୍ତ୍ରୀ କହିଲେ କି ତାଙ୍କୁ ଥରେ ରାଜକନ୍ୟାଙ୍କୁ ଭେଟିବାର ସୁଯୋଗ ଦିଆଯାଉ । ରାଜା ହଁ ଭରିଲେ ।

ରାଜକନ୍ୟା ନିଜର ଚିତ୍ରଟି ପାଖରେ ବସିଥିଲେ । ଯୁବକ ଯାଇ କିଛି କାଳ

ନିର୍ନିମେଷ ନୟନରେ ଚିତ୍ରକୁ ଅନାଇ ତା'ପରେ ମୁଗ୍ଧ କଣ୍ଠରେ କହିଲେ, "ରାଜକୁମାରୀ! ଏ ଅପୂର୍ବ ଚିତ୍ର ଦେଖି ମୋ ଭିତରୁ ସଙ୍ଗୀତର ଆବେଗ ଉଚ୍ଛୁଳି ପଡୁଛି । ଆପଣ ଅନୁମତି ଦେଲେ ଗୀତ ବୋଲନ୍ତି ।"

ରାଜକୁମାରୀଙ୍କର ସଙ୍ଗୀତ ପ୍ରତି ଅନୁରାଗ ଆଗରୁ ଥିଲେ ମଧ୍ୟ ହଠାତ୍ ଏ ଯୁବକର ପ୍ରସ୍ତାବରେ ସେ ଟିକିଏ ବିସ୍ମିତ ହେଲେ; ତା'ପରେ ତାଙ୍କୁ ଗାଇବାକୁ ଅନୁମତି ଦେଲେ ।

ସଙ୍ଗୀତଜ୍ଞ ସବୁଠାରୁ ସୁନ୍ଦର ଗୀତଟିମାନ ବାଛି ବାଛି ବୋଲିଲେ । ମନେହେଲା ରାଜକୁମାରୀ ସେ ଗୀତଗୁଡ଼ିକ ଶୁଣି ଖୁବ୍ ମୁଗ୍ଧ ହୋଇଛନ୍ତି । ଦେଖାଗଲା କ୍ରମେ ରାଜକୁମାରୀ ଚିତ୍ରପଟ ଆଡ଼େ ଧ୍ୟାନ ନ ଦେଇ ନିଜେ ଗୁଣୁ ଗୁଣୁ ହୋଇ ଗୀତ ଗାଉଛନ୍ତି । ଏଇ ସୁଯୋଗରେ ଶିଳ୍ପୀ କହିଲେ, "ରାଜବୁମାରୀ ଆପଣ ଗୀତ ଶିଖି ବୋଲିଲେ ଭଲ ହୁଅନ୍ତା ନାହିଁ ।"

ରାଜକୁମାରୀ ରାଜାଙ୍କୁ କହିଲେ କି ସେ ଗୀତ ଶିଖିବେ । ରାଜା ଯୁବକଙ୍କୁ ସେଠି ରହି ରାଜକୁମାରୀଙ୍କୁ ଗୀତ ଶିଖାଇବାକୁ ଅନୁରୋଧ କଲେ । ତାହାହିଁ ହେଲା । ଗୀତ ସଙ୍ଗେ ସଙ୍ଗେ ରାଜକନ୍ୟା ନୃତ୍ୟ ବି ଶିଖିଲେ । ତାଙ୍କ ଉଦାସ ଭାବ ଛୁଟିଗଲା । ସେ ପ୍ରସନ୍ନ ଦେଖାଗଲେ ।

ଯୁବକ ଦିନେ ରାଜାଙ୍କୁ କହିଲେ, "ମହାରାଜ! ରାଜକନ୍ୟା ଯେଉଁ ଚିତ୍ରଟି ଅଙ୍କନ କରିଥିଲେ, ତାହା ଏତେ ଉତ୍କୃଷ୍ଟ ଯେ ତା'ଠୁଁ ବେଶି ଭଲ ଚିତ୍ର ସେ ଆଉ ଆଙ୍କି ପାରିବେ ନାହିଁ ବୋଲି ବୁଝୁଥିଲେ । ନିଜ ଦକ୍ଷତାର ଶେଷ ସୀମାରେ ପହଞ୍ଚି ଯାଇଥିବା ଯୋଗୁଁ ସେ ବିଷାଦ ଅନୁଭବ କରୁଥିଲେ । ତାଙ୍କ ପ୍ରତିଭା ଯେତେବେଳେ ସଙ୍ଗୀତ ଓ ନୃତ୍ୟ ଆଡ଼େ ନିୟୋଜିତ ହେଲା, ସେତେବେଳେ ସେ ପୁଣି ଆନନ୍ଦ ପାଇଲେ ।"

ରାଜା ବହୁତ ଖୁସି ହେଲେ ଓ ଯୁବକଙ୍କୁ ପ୍ରଚୁର ପୁରସ୍କାର ଓ ସମ୍ମାନ ଦେଲେ ।





# ଦେବଧର୍ମ

ଅନେକ ଶତାବ୍ଦି ପୂର୍ବର କଥା । କାଶୀ ରାଜାଙ୍କର ଥିଲେ ଦୁଇଟି ପୁଅ । ବଡ଼ର ନାମ ଥିଲା ମହିଂସାସ ଓ ସାନର ନାମ ଥିଲା ଚନ୍ଦ୍ରକୁମାର । ମହିଂସାସ ଥିଲେ ବୋଧିସତ୍ତ୍ୱ । ଦୁଇଭାଇଙ୍କର ବାଳକ ଅବସ୍ଥାରେହିଁ ମାତୃ-ବିୟୋଗ ଘଟିଲା ।

କିଛିଦିନ ପରେ ରାଜା ପୁଣି ଥରେ ବିବାହ କଲେ । ବର୍ଷକ ପରେ ତାଙ୍କର ମଧ୍ୟ ପୁଅଟିଏ ହେଲା । ରାଜା ତା'ର ନାମ ରଖିଲେ ସୂର୍ଯ୍ୟ-କୁମାର । ଦିନେ ରାଜା ପ୍ରସନ୍ନ ହୋଇ ରାଣୀଙ୍କୁ କହିଲେ, "ପୁଅ ପାଇଁ କିଛି ଯଦି ଇଚ୍ଛା ହେଉଛି ତ କୁହ ମୁଁ ପୂରଣ କରିବି ।"

"ଆଜି ନୁହେଁ ମହାରାଜ ପରେ ମୁଁ ଆପଣଙ୍କୁ ମନେ କରିଦେବି ।" ରାଣୀ କହିଲେ ।

କେତେ ବର୍ଷ ବିତିଗଲା । ଦିନେ ମହାରାଜ ଭୋଜନ ସାରି ବିଶ୍ରାମ କରୁଥିବା ବେଳେ ରାଣୀ ରାଜାଙ୍କୁ ପୂର୍ବକଥା ମନେ ପକାଇ ଦେଇ କହିଲେ, "ସ୍ୱାମୀ, ଆପଣ ମୋ ପୁଅର ଜନ୍ମ ସମୟରେ ମୋର ଇଚ୍ଛା ପୂରଣ କରିବାକୁ କହିଥିଲେ । ଏବେ ଆପଣ ମୋ ପୁଅକୁ ରାଜଗାଦି ଦିଅନ୍ତୁ ।"

ରଜା ଟିକିଏ ରାଗି ଉଠି କହିଲେ, "ଅଗ୍ନିଶିଖା ସଦୃଶ ଜ୍ୟୋତିଷ୍ମାନ ଦୁଇ ବଡ଼ ପୁଅ ଥାଉଁ ଥାଉଁ ତୁମ ପୁତ୍ରର ରାଜ୍ୟାଭିଷେକ କରିବା ସମ୍ଭବ ନୁହେଁ ।"

ତା'ପରେ ରାଜା ଭାବିବାକୁ ଲାଗିଲେ, ଯେ ଏପରି ପ୍ରତ୍ୟାଖ୍ୟାତ ହେବା ଦ୍ୱାରା ହୁଏତ ରାଣୀ ଜ୍ୟେଷ୍ଠ ପୁତ୍ରର କିଛି ଅନିଷ୍ଟ କରି ପାରନ୍ତି । ସେଥିଯୋଗୁ ଦିନେ ରାଜା ବଡ ଦୁଇ ପୁଅଙ୍କୁ ଡାକି କହିଲେ, "ମୋର ପ୍ରିୟ ପୁତ୍ରମାନେ ଶୁଣ, ତୁମ ସାନ ମା'ର ପିଲା ହେବା ପରେ ମୁଁ ତାଙ୍କୁ କଥା ଦେଇଥିଲି ତାଙ୍କର କୌଣସି ଇଚ୍ଛା ପୂରଣ




କରିବାକୁ । ସେ ଏବେ ତାଙ୍କ ପୁଅ ପାଇଁ ସିଂହାସନ ମାଗୁଛନ୍ତି । ମୁଁ କେବେ ମଧ୍ୟ ସେପରି ଅନ୍ୟାୟ କାର୍ଯ୍ୟ କରିପାରିବି ନାହିଁ । କିନ୍ତୁ ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ । ହୁଏତ ସେ ତୁମର କିଛି ଅନିଷ୍ଟ ଘଟାଇ ପାରେ । ତେଣୁ ତୁମେ ଦୁହେଁ ବଣକୁ ବା ଅନ୍ୟ ଦେଶକୁ ଚାଲିଯାଅ । ମୁଁ ମରିଗଲା ପରେ ଆସିବ ଓ ସିଂହାସନ ପାଇବ ।"

ବିଚାରି ସୂର୍ଯ୍ୟକୁମାରଙ୍କୁ ଏସବୁ କଥା ଜଣା ନଥାଏ । ତିନି ଭାଇ କିନ୍ତୁ ପରସ୍ପରକୁ ଖୁବ୍ ଭଲ ପାଉଥା'ନ୍ତି । ସେ ଯେତେବେଳେ ଦେଖିଲା ଦୁଇ ବଡ଼ ଭାଇ କୁଆଡ଼େ ଯିବାପାଇଁ ପ୍ରସ୍ତୁତ ହେଉଛନ୍ତି, ସେ ମଧ୍ୟ ସେମାନଙ୍କ ସହିତ ଯିବା ପାଇଁ ଇଚ୍ଛା ପ୍ରକାଶ କଲା । ଭାଇମାନଙ୍କର ସ୍ୱୀକୃତି ପାଇବା ମାତ୍ରେ ସେ ମଧ୍ୟ ଅଳ୍ପ ସମୟ ଭିତରେ ପ୍ରସ୍ତୁତ ହୋଇ ଆସିଲା ଓ ତିନିହେଁ ରାଜ୍ୟ ଛାଡି ଚାଲିଗଲେ ।

ତିନି ଭାଇ ଯାଇ ଏକ ଜଙ୍ଗଲରେ ଥିବା ଗୋଟିଏ ବିରାଟ ବୃକ୍ଷ ଛାୟାରେ ବିଶ୍ରାମ କଲେ । ବୋଧିସତ୍ତ୍ୱ କହିଲେ, "ସୂର୍ଯ୍ୟ, ଆଗରେ ଗୋଟିଏ ସରୋବର ଅଛି । ତୁମେ ସେଠାରେ ଯାଇ ପାଣି ପିଇବ ଓ ଆମ ପାଇଁ ପଦ୍ମପତ୍ରରେ କିଛି ପାଣି ନେଇ ଆସିବ ।"

ସେହି ସରୋବରରେ ଥାଏ ଏକ ଯକ୍ଷ । ତାକୁ କୁବେର ସେଠାରେ ରଖାଇଥା'ନ୍ତି । କୁବେର ତାକୁ କହିଥିଲେ, "ଏଇ ସରୋବରକୁ ଆସୁଥିବା ମନୁଷ୍ୟମାନଙ୍କ ମଧ୍ୟରୁ ଯିଏ ଦେବଧର୍ମ ଜାଣିଥିବ ତାଙ୍କୁ ଛାଡ଼ି ଅନ୍ୟ ସମସ୍ତେ ତୁମର । କିନ୍ତୁ ଜଳ ମଧ୍ୟରେ ପ୍ରବେଶ ନ କରିଥିବା ପ୍ରାଣୀର କୌଣସି ଅନିଷ୍ଟ କରିବ ନାହିଁ ।"

ସୂର୍ଯ୍ୟକୁମାର ପାଣିରେ ପାଦ ଦେବା ମାତ୍ରେ ସେ ପଚାରିଲା, "ତମେ ଦେବଧର୍ମ ଜାଣ କି ?"

"ହଁ ଜାଣେ । ଦେବଧର୍ମ ଅର୍ଥ ସୂର୍ଯ୍ୟ ଚନ୍ଦ୍ର ।" ସୂର୍ଯ୍ୟକୁମାର ଉତ୍ତର ଦେଲେ ।

"ନା, ଏ ଉତ୍ତର ଠିକ୍ ନୁହେଁ ।" କହି ଯକ୍ଷ ସୂର୍ଯ୍ୟକୁମାରଙ୍କୁ ଜଳ ମଧ୍ୟକୁ ଟାଣି ନେଲା ।

ସୂର୍ଯ୍ୟକୁମାରଙ୍କର ଆସିବାରେ ବିଳମ୍ବ ହେବାର ଦେଖି ବୋଧିସତ୍ତ୍ୱ ଚନ୍ଦ୍ରକୁମାରଙ୍କୁ ସରୋବର ନିକଟକୁ ପଠାଇଲେ । ଯକ୍ଷ ତାଙ୍କୁ ମଧ୍ୟ ପଚାରିଲା, "ଦେବଧର୍ମର ଅର୍ଥ କ'ଣ ?"

ଚନ୍ଦ୍ରକୁମାର କହିଲେ, "ଦେବଧର୍ମ ଅର୍ଥ ଗୃହଦଗ।"

"ତମେ ମଧ୍ୟ ଦେବଧର୍ମ ଜାଣନାହିଁ।" ଏହା କହି ଯକ୍ଷ ତାଙ୍କୁ ମଧ୍ୟ ଗଭୀର ଜଳ ମଧ୍ୟକୁ ଟାଣିନେଲା।

ଚନ୍ଦ୍ରକୁମାର ଫେରିବାରେ ବିଳମ୍ବ ହେବାରୁ ବୋଧିସତ୍ତ୍ୱ ଦୁଇଭାଇଙ୍କ ଉପରେ ବିପଦ ପଡ଼ିଥିବାର ଆଶଙ୍କା କରି ସ୍ୱୟଂ ସରୋବର କୂଳକୁ ଗଲେ। ସେଠାରେ ଦେଖିଲେ ଦୁଇଜଣଙ୍କର ପାଦଚିହ୍ନ ପାଣି ଭିତରକୁ ଯାଇଛି କିନ୍ତୁ ଫେରିବାର ଚିହ୍ନ ନାହିଁ। ସେ ବୁଝିଲେ କୌଣସି ଯକ୍ଷ ବା ରାକ୍ଷସ ଏହି ସରୋବରରେ ଅଛି। ତେଣୁ ତରବାରି ଧରି ସେ ପ୍ରସ୍ତୁତ ହୋଇ ରହିଲେ।



ବୋଧିସତ୍ତ୍ୱ ପାଣି ଭିତରକୁ ନ ଯିବାରୁ ଯକ୍ଷ ଏକ ବନଚରର ରୂପ ନେଇ ବୋଧିସତ୍ତ୍ୱଙ୍କ ପାଖକୁ ଆସି ପଚାରିଲା, "ମହାଶୟ, ଆପଣ ସରୋବର ଭିତରକୁ ଯାଇ ସ୍ନାନ କରୁନାହାନ୍ତି କାହିଁକି?"

ବୋଧିସତ୍ତ୍ୱ ତତ୍‌କ୍ଷଣାତ୍ ଅନୁମାନ କରିନେଲେ ଯେ ଏହି ମାୟାବୀହିଁ ସରୋବରର ମାଲିକ ଯକ୍ଷ। ତେଣୁ ସେ ସିଧା ପଚାରିଲେ, "କ'ଣ ତମେହିଁ ମୋ ଭାଇମାନଙ୍କୁ ନେଇ ଯାଇଛ?"

"ହଁ, ହଁ, ମୁହିଁ ନେଇଛି।" ଯକ୍ଷ କହିଲା।

"କିନ୍ତୁ କାହିଁକି?" ବୋଧିସତ୍ତ୍ୱ ପଚାରିଲେ।

"ଏ ସରୋବରରେ ଯିଏ ପ୍ରବେଶ କରେ ସେ ମୋର ଅଧୀନତା ସ୍ୱୀକାର କରିବାକୁ ବାଧ୍ୟ। କେବଳ ଦେବଧର୍ମ ଜାଣିଥିବା ବ୍ୟକ୍ତି ମୋର ଅଧୀନ ହୁଏ ନାହିଁ।" ଯକ୍ଷ କହିଲା।

"ଓ, ଏମିତି କଥା? ତମେ ତେବେ ଦେବଧର୍ମ କ'ଣ ଜାଣିବାକୁ ଚାହୁଁଛ?" ବୋଧିସତ୍ତ୍ୱ ପଚାରିଲେ।

"ନିଶ୍ଚୟ, ନିଶ୍ଚୟ, ତାହାହିଁ ତ ମୋର ସର୍ତ୍ତ।" ଯକ୍ଷ କହିଲା।

"ତେବେ ଶୁଣ। ନିନ୍ଦା ପ୍ରତି ଯାହାର ଭୟ ଥିବ, ଯିଏ ସର୍ବଦା ଶୁଭକର୍ମ କରୁଥିବ ଏବଂ ଯାହାର ପ୍ରକୃତି ହୋଇଥିବ ଶାନ୍ତ ଓ ପ୍ରେମମୟ, ସେହି ଉତ୍ତମ ପୁରୁଷର ଧର୍ମକୁ ଦେବଧର୍ମ ବୋଲି କୁହାଯାଏ।" ବୋଧିସତ୍ତ୍ୱ କହିଲେ।

ଯକ୍ଷ କହିଲା, "ମୁଁ ଆପଣଙ୍କ ଉତ୍ତରରେ ସନ୍ତୁଷ୍ଟ । ଦୟାକରି କହନ୍ତୁ ଦୁଇଭାଇଙ୍କ ମଧ୍ୟରେ କେଉଁ ଜଣକୁ ଆପଣ ଚାହାନ୍ତି! କାରଣ ମୁଁ କେବଳ ଜଣକୁ ଦେଇପାରେ ।"

"ତେବେ ଜ୍ୟେଷ୍ଠ ସୂର୍ଯ୍ୟକୁମାରକୁ ଦିଅନ୍ତୁ ।" ବୋଧିସତ୍ତ୍ୱ କହିଲେ ।

ଯକ୍ଷ କହିଲା, "ହେ ବନ୍ଧୁ, ଆପଣ ଦେବଧର୍ମ ଜାଣନ୍ତି କିନ୍ତୁ ପାଳନ କରିପାରୁ ନାହାନ୍ତି ।"

"ଏପରି କାହିଁକି କହୁଛନ୍ତି?" ବୋଧିସତ୍ତ୍ୱ ପଚାରିଲେ ।

"ଆପଣ ଦୁଇ ଭାଇଙ୍କ ମଧ୍ୟରୁ ବଡ଼କୁ ଛାଡ଼ି ଜ୍ୟେଷ୍ଠକୁ ମାଗୁଛନ୍ତି ମାନେ ବଡ଼କୁ ଅନାଦର କରୁନାହାନ୍ତି କି?" ଯକ୍ଷ କହିଲା ।

"ଓ, ଏଇକଥା? ତେବେ ଶୁଣ । ଏହି ଜ୍ୟେଷ୍ଠ ଭାଇ ହେଉଛି ମୋର ବୈମାତୃକ ଭାଇ । ଆମ ସାବତ ମା' ଏଇ ଜ୍ୟେଷ୍ଠଭାଇ ରାଜା ହେବାର ଇଚ୍ଛା ବାପାଙ୍କ ପାଖରେ ପ୍ରକାଶ କରିଥିଲେ । ତାଙ୍କର ସେ ଇଚ୍ଛା ବାବା ପୂରଣ କଲେ ନାହିଁ । ତେଣୁ ଆମର ଅନିଷ୍ଟ ହେବା ଆଶଙ୍କାରେ ସେ ଆମକୁ ଦୂରକୁ ପଠାଇଲେ । ଜ୍ୟେଷ୍ଠଭାଇଟି ସ୍ନେହବଶରେ ଆମ ସହିତ ଆସିଲା । ଏବେ କେଉଁ ମୁହଁରେ ନିଜ ଭାଇକୁ ସଙ୍ଗରେ ନେଇ ଓ ବୈମାତୃକ ଭାଇର ମୃତ୍ୟୁ ସମ୍ବାଦ ନେଇ ମୁଁ ରାଜ୍ୟକୁ ଫେରିବି? ଏକଥା କିଏ ବା ବିଶ୍ୱାସ କରିବ?" ବୋଧିସତ୍ତ୍ୱ କହିଲେ ।

"ସାଧୁ, ସାଧୁ, ଆପଣହିଁ କେବଳ ଦେବଧର୍ମ ଜାଣନ୍ତି ଓ ତାକୁ ପ୍ରକୃତରେ ପାଳନ କରନ୍ତି ।" ଯକ୍ଷ ବୋଧିସତ୍ତ୍ୱଙ୍କର ପ୍ରଶଂସା କରି ଦୁଇଭାଇଙ୍କୁ ପାଣିରୁ ଆଣି ବୋଧିସତ୍ତ୍ୱଙ୍କୁ ପ୍ରଦାନ କଲା ।

କିଛିଦିନ ପରେ ତିନିଭାଇ ଶୁଣିଲେ ତାଙ୍କ ପିତା ସ୍ୱର୍ଗପ୍ରାପ୍ତ ହୋଇଛନ୍ତି । ଯୁବରାଜ ମହିଂସାସ ଦୁଇଭାଇଙ୍କୁ ଧରି ରାଜ୍ୟକୁ ଲେଉଟିଲେ ଓ ସିଂହାସନରେ ବସିଲେ । ଚନ୍ଦ୍ରକୁମାର ଯୁବରାଜ ହେଲେ ଓ ସୂର୍ଯ୍ୟକୁମାର ସେନାପତି ପଦ ପାଇଲେ । ଅନେକ ବର୍ଷ ପର୍ଯ୍ୟନ୍ତ ତିନିଭାଇ ଶାନ୍ତିର ସହିତ ରାଜ୍ୟଶାସନ କଲେ ।






ଭାରତର ନଦନଦୀ

# ମୃଦୁସ୍ରୋତା ତମସା

ଅନେକ ପୂର୍ବ କାଳର କଥା । ଗୋଟିଏ ବଣ ଭିତରେ ରହୁଥାନ୍ତି ଋଷି ଶୁକ୍ରାଚାର୍ଯ୍ୟ । ତାଙ୍କ କୁଟୀରର ଅଦୂରରେ ଗୋଟିଏ ସୁନ୍ଦର ସରୋବର ଥିଲା । ଋଷିଙ୍କ କନ୍ୟା ଅରଜା ସେ ସରୋବରରେ ସ୍ନାନ ଓ ସନ୍ତରଣ କରିବାକୁ ସୁଖ ପାଉଥାଏ ।

ଦିନେ ତରୁଣୀ ଅରଜା ସେ ସରୋବରରେ ସ୍ନାନ କରୁଥିବା ବେଳେ ମୃଗୟା ଉଦ୍ଦେଶ୍ୟରେ ଆସିଥିବା ଦଣ୍ଡକ ନାମକ ରାଜା ତାଙ୍କୁ ବଣବୁଦା ଆଢ଼୍‌ଆଳରୁ ଦେଖିଲେ । ଅରଜାର ସୌନ୍ଦର୍ଯ୍ୟରେ ମୋହିତ ହୋଇ ସେ ଅପେକ୍ଷା କଲେ ।





ଅରଜା ସରୋବର ଭିତରୁ ବାହାର ଆସିବା ମାତ୍ରେ ରାଜା ତା' ଆଗକୁ ଯାଇ ତାଙ୍କୁ ବିଭା ହେବାର ଇଚ୍ଛା ପ୍ରକାଶ କଲେ ଓ ସଙ୍ଗେ ସଙ୍ଗେ ତାଙ୍କ ସହ ନଅରକୁ ଆସିବାକୁ କହିଲେ । ଅରଜା ସେଥିରେ ଅସମ୍ମତ ହେବାରୁ ରାଜା ଦଣ୍ଡକ ତା' ହାତ ଧରି ତାକୁ ଟାଣି ନେଇ ଯିବାକୁ ଚେଷ୍ଟା କଲେ ।



ଅରଜା କୌଣସି ମତେ ରାଜାଙ୍କ କବଳରୁ ନିଜକୁ ଖସାଇ ନେଇ ଦୌଡ଼ି ପଳାଇଗଲା ଓ କାନ୍ଦି କାନ୍ଦି କୁଟୀରରେ ପହଞ୍ଚିଲା । ଋଷି ଶୁକ୍ରାଚାର୍ଯ୍ୟ ମାତୃହରା କନ୍ୟା କାନ୍ଦୁଥିବାର ଦେଖି ବିଚଳିତ ହେଲେ ଓ ତାକୁ ନାନା ପ୍ରଶ୍ନ କରି କାରଣ କ'ଣ ଜାଣିଲେ ।

କ୍ରୁଦ୍ଧ ଋଷି ଅଭିଶାପ ଦେଲେ : "ଅସହାୟକୁ ରକ୍ଷା କରିବା ରାଜାର କର୍ତ୍ତବ୍ୟ । ତାହା ନକରି ଯେଉଁ ରାଜା ଅସହାୟ ଉପରେ ବଳାତ୍କାର କରେ, ସେ ପାପୀ ଓ ତା' ରାଜ୍ୟ କଳଙ୍କିତ । କେବଳ ସାଧୁ ଓ ସତ୍ୟବାନ୍ ଲୋକଙ୍କୁ ଛାଡ଼ି ଏ ସାରା ରାଜ୍ୟର ସବୁ କିଛି ଭସ୍ମୀଭୂତ ହେଉ ।"





ହୁହୁଁ ହୁହୁଁ ରାଜ୍ୟ ବ୍ୟାପି ଅଗ୍ନି ହୁହୁ ହୋଇ ଜଳି ଉଠିଲା । ରାଜାଙ୍କ ପ୍ରାସାଦ ସମେତ ସହର ଓ ଗାଁ ଗଣ୍ଡା ସବୁ ଜଳି ଛାରଖାର ହୋଇଗଲା । ଅରଜା ସରୋବର ଭିତରେ ଆଶ୍ରୟ ନେଲେ । ଅଗ୍ନି ପ୍ରଶମିତ ହେବା ପର୍ଯ୍ୟନ୍ତ ସେ ସେଇଠାରେ ରହିଥାନ୍ତି । ସରୋବର ଭରପୁର ରହିଥାଏ ।

ଯେଉଁମାନେ ଅଗ୍ନି କାଣ୍ଡ କବଳରୁ ବର୍ତ୍ତି ରହିଲେ, ସେମାନେ ସେ ରାଜ୍ୟ ଛାଡ଼ି ଦୂରଦୂରାନ୍ତର ଉଦ୍ଦେଶ୍ୟରେ ଚାଲିଗଲେ । ଧ୍ୱଂସସ୍ତୂପରେ ପରିଣତ ହୋଇଥିବା ସେ ମୁଲକ କଥା କ୍ରମେ ଦୂରର ଲୋକେ ପାସୋରି ଦେଲେ । ବହୁ ବର୍ଷ ବିତିଗଲା । ସେ ମୁଲକ ମରୁଭୂମି ଭଳି ପରିତ୍ୟକ୍ତ ହୋଇ ପଡ଼ିଥାଏ ।






ଥରେ ପ୍ରବଳ ବର୍ଷା ହେଲା । ସେ ସରୋବର ଉଚ୍ଛୁଳି ନଦୀ ରୂପରେ ବହିଯିବାକୁ ଲାଗିଲା । ପର୍ବତରୁ ଝରଣା ବହି ଆସି ସେ ସରୋବରକୁ ନିରନ୍ତର ଜଳ ଯୋଗାଇଲା । ଦୂରରୁ ଦୂରରୁ ପକ୍ଷୀମାନେ ଆସି ଫଳ ମଞ୍ଜି ସେ ଅଞ୍ଚଳରେ ବିଞ୍ଚିଲେ । ନଈ କୂଳରେ ଗଛଲତା ବଢ଼ିଲା ।

କାଳକ୍ରମେ ସେ ମୁଲକରେ ଗୋଟିଏ ବଣ ବଢ଼ି ଉଠିଲା । ନଦୀଟି ସ୍ଥାୟୀ ହୋଇ ରହିଲା । ମୁନି ଋଷିମାନେ ଜାଣିଥିଲେ ତାହା ଏକଦା ଦଣ୍ଡକ ରାଜାଙ୍କ ରାଜ୍ୟ ଥିଲା । ତେଣୁ ସେମାନେ ସେ ବଣର ନାମ ରଖିଲେ ଦଣ୍ଡକାରଣ୍ୟ । ନଦୀ ବଣ ଭିତରେ ଲୁଚି ରହିଥାଏ ବୋଲି ତା'ର ନାମ ଦେଲେ ତମସା ।





ଦଣ୍ଡକାରଣ୍ୟ କ୍ରମେ ମୁନିଋଷିମାନଙ୍କ ନିବାସ ଭୂମିରେ ପରିଣତ ହେଲା । ରାମ ସୀତା ଓ ଲକ୍ଷ୍ମଣ ସେମାନଙ୍କ ବନବାସ କାଳର ଅଧିକାଂଶ ସମୟ ଦଣ୍ଡକାରଣ୍ୟରେହିଁ ରହିଥିଲେ । ନାନା ପ୍ରାକୃତିକ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ଦଣ୍ଡକାରଣ୍ୟ ଭିତରେ ମୁନିଋଷିଙ୍କ ସମେତ ରାକ୍ଷସମାନେ ମଧ୍ୟ ରହିବାକୁ ଲାଗିଲେ ।

ଦଣ୍ଡକାରଣ୍ୟ ଭିତରେ ତମସା ନଦୀ କୂଳରେ ମହାକବି ଓ ଋଷି ବାଲ୍ମିକୀଙ୍କ ଆଶ୍ରମ ଅବସ୍ଥିତ ଥିଲା । ସେଇଠାରେ ପୃଥିବୀର ପ୍ରଥମ କବିତା ରଚନା କରିଥିଲେ ବାଲ୍ମିକୀ । ପରେ ପରେ ତମସା କୂଳରେ ସେ ରଚନା କଲେ ଅପୂର୍ବ ତଥା ଚିରକାଳର ଅତୁଳନୀୟ ମହାକାବ୍ୟ ରାମାୟଣ ।





ଜନନୀ ସୀତା ତମସା କୂଳରେ ଋଷି ବାଲ୍ମିକୀଙ୍କ ଆଶ୍ରମରେ ଆଶ୍ରୟ ନେଇଥିଲେ । ସେଇଠି ଜନ୍ମ ହୋଇ-ଥିଲେ ଲବ କୁଶ । ମହାକବି ସେ ଦୁହିଙ୍କୁ ରାମାୟଣ ଆବୃତ୍ତି କରିବାକୁ ଶିଖାଇଥିଲେ । ଆଜିବି ତମସା ଏକ ନମ୍ର ଓ ମୃଦୁସ୍ରୋତା ନଦୀ ରୂପେ ପ୍ରବାହିତା ।

# ସବୁଠୁଁ ମୂଲ୍ୟବାନ ଉପହାର

ମଣିମେଖଳା ଦେଶର ରାଜା ଗୋକର୍ଣ୍ଣ ନିଜ ଜନ୍ମଦିନ ଖୁବ୍ ଧୂମ୍‌ଧାମରେ ପାଳନ କରୁଥିଲେ । ସେଦିନ ରାଜ୍ୟର ସମ୍ଭ୍ରାନ୍ତ ବ୍ୟକ୍ତିବର୍ଗ, ଧନୀକ ଏବଂ ଗୁଣୀଜନଙ୍କୁ ନୈଶ ଭୋଜନରେ ସେ ଆମନ୍ତ୍ରିତ କରୁଥିଲେ ।

ସେଦିନ ସକାଳଠୁଁ ଲୋକେ ରାଜାଙ୍କୁ ନାନାବିଧ ଉପହାର ପଠାଉଥିଲେ । ଯିଏ ସବୁଠାରୁ ମୂଲ୍ୟବାନ ଉପହାର ପଠାଉଥିଲା, ରାଜା ତାକୁ ନୈଶ ଭୋଜନ ବେଳେ ନିଜ ପାଖରେ ଆସନ ଦେଉଥିଲେ ।

ବର୍ଷେ ଜନ୍ମଦିନରେ ଆସି ପହଞ୍ଚିଗଲେ ତାଙ୍କ ଗୁରୁ । ସନ୍ଧ୍ୟାବେଳେ ଗୁରୁ କୌତୂହଳୀ ହୋଇ ଲୋକେ ପଠାଇଥିବା ଉପହାରମାନ ଦେଖୁଥାନ୍ତି । ରାଜା ପଚାରିଲେ, "ଗୁରୁଦେବ ! କେଉଁ ଉପହାରଟି ସବୁଠାରୁ ମୂଲ୍ୟବାନ ବୋଲି ମନେ ହେଉଛି ?"

ଗୁରୁ ଖଣ୍ଡିଏ ଶୁଖିଲା ରୋଟି ଆଡ଼େ ଅଙ୍ଗୁଳି ଦେଖାଇ ଦେଲେ । ଅନୁସନ୍ଧାନରୁ ବୁଝାଗଲା, ତାହା ପଠାଇଥିଲା ପ୍ରାସାଦ ପାଖରେ ଥିବା ଜଣେ ଗରୀବ ଲୋକ । ସେହି ଖଣ୍ଡିକ ପଠାଇଥିବା ଯୋଗୁଁ ତାକୁ ସାରାଦିନ ଉପାସ ରହିବାକୁ ପଡ଼ିଥିଲା ।

ରାଜା ସେହି ଲୋକଙ୍କୁ ଡକାଇ ନିଜ ପାଖରେ ଆସନ ଦେଲେ ଓ ଖୁଆଇଲେ ।







# ବହୁରୂପୀ

ସିଂହପୁର ରାଜ୍ୟରେ ମଲ୍ଲବର୍ମା ନାମକ ଜଣେ ବହୁରୂପୀ ଥାଏ । ସେ ନାନା ରୂପ ଓ ବେଶ ଧାରଣ କରି ନାନା ପ୍ରକାରର ଭଙ୍ଗୀ ଓ କଥାବାର୍ତ୍ତା କରି ମୂର୍ଖ ଓ ପଣ୍ଡିତ ଉଭୟଙ୍କର ପ୍ରଶଂସାପାତ୍ର ହୋଇଥାଏ ।

ଥରେ ଦଶହରା ଉତ୍ସବରେ ସିଂହପୁର ରାଜ୍ୟର ଗୋଟିଏ ଗ୍ରାମରେ ମଲ୍ଲଯୁଦ୍ଧ ପ୍ରତିଯୋଗିତା ହେଉଥାଏ । ମଲ୍ଲବର୍ମା ସିଂହପୁରର ସେନାପତିଙ୍କ ବେଶ ଧରି ସେହିପରି ସମସ୍ତଙ୍କୁ କଥାବାର୍ତ୍ତାରେ ପ୍ରଭାବିତ କରି ସେଠାରେ ପହଞ୍ଚିଲା । ଗ୍ରାମବାସୀମାନେ ତାକୁ ସେନାପତି ଭାବି ଖୁବ୍ ଆଦର ଅଭ୍ୟର୍ଥନା କରି ତାକୁ ନେଇ ଉଚ୍ଚ ଆସନରେ ବସାଇଲେ । ପ୍ରତିଯୋଗିତା ସମାପ୍ତ ହେଲା । ଗ୍ରାମବାସୀମାନେ ମଲ୍ଲବର୍ମାଙ୍କ ହାତରେହିଁ ପୁରସ୍କାର ବାଣ୍ଟିବା କାମ କରାଇଲେ । ପୁରସ୍କାର ବାଣ୍ଟିସାରିବା ପରେ ସେ ହାତ ଯୋଡି କହିଲା, "ସଭାସ୍ଥିତ ସଭ୍ୟବୃନ୍ଦ, ପ୍ରଥମେ ମୋର ଦୋଷ କ୍ଷମା କରନ୍ତୁ । ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ଏଠାକୁ ଆମ ରାଜ୍ୟର ପ୍ରକୃତ ସେନାପତି ଆସି ନାହାନ୍ତି । ମୁଁ ଆପଣମାନଙ୍କ ମନୋରଞ୍ଜନ କରିବା ଉଦ୍ଦେଶ୍ୟରେ ଏପରି ସେନାପତିଙ୍କ ବେଶ ଧରି ଆସିଛି । କିନ୍ତୁ ସେନାପତି ଯଦି ଏଠାରେ ପ୍ରକୃତରେ ଉପସ୍ଥିତ ଥା'ନ୍ତେ ତେବେ ଏ ଯୁବକ ଦୁହିଁଙ୍କୁ ସୈନ୍ୟଦଳ ମଧ୍ୟରେ ନେଇଥା'ନ୍ତେ ।"

ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଉଦୟଭଟ୍ଟ ନାମକ ଜଣେ ପଣ୍ଡିତ ଉଠି ପଡ଼ି କହିଲେ, "ତୁମର ଏପରି ବେଶ ଖୁବ୍ ପ୍ରଶଂସନୀୟ । ତୁମର ଅଭିନୟ ତ ଏକବାରେ ନିର୍ଭୁଲ । ଆଚ୍ଛା ଏବେ ତୁମର ପରିଚୟ ଦିଅ ।"

ମଲ୍ଲବର୍ମା ନିଜର ପ୍ରକୃତ ପରିଚୟ ଦେଇ ପୁଣି ଥରେ ନିବେଦନ କରି କହିଲା, "ସମସ୍ତ

ସୁରେନ୍ଦ୍ର

ନାଗରିକଙ୍କୁ ମୋର ନିବେଦନ ମୋର ଭୁଲ୍ କ୍ଷମା କରନ୍ତୁ । ମୁଁ ଉତ୍ସବ ଦିନରେ ସମସ୍ତଙ୍କର ମନୋରଞ୍ଜନ କରିବା ପାଇଁ ଏପରି କରିଥିଲି ଆଶା କରୁଛି କେହି ମୋ ଉପରେ ରାଗିବେ ନାହିଁ ।" ଏବଂ ତା'ପରେ ସେ ତା'ର ଛଦ୍ମବେଶ କାଢ଼ି ପକାଇଲା ।

ପଣ୍ଡିତ ଉଦୟ ଭଟ୍ଟ ମଲ୍ଲବର୍ମାର ବହୁତ ପ୍ରଶଂସା କଲେ ଓ କହିଲେ, "ତମେ ତମର ବେଶର ଅନୁରୂପ ବ୍ୟବହାର ମଧ୍ୟ କରିପାରୁଛ । ତମେ ଯଦି ଏତେ ସୁନ୍ଦର ଅଭିନୟ କରୁଛ ତେବେ ରାଜା ବୀରସେନ୍‌ଙ୍କ ଦରବାରକୁ ଯାଇ କାହିଁକି ଏ ଅଭିନୟ ଦେଖାଉ ନାହିଁ ?"

"ବାଃ ଆପଣ ଏ କ'ଣ କହୁଛନ୍ତି । ଦେଶର ରାଜାଙ୍କ ସମ୍ମୁଖରେ ଏହି ସାଧାରଣ ବହୁରୂପୀର ଅଭିନୟ କିଏ ଦେଖାଇବ ? ଏ ତ ଲଜ୍ଜାର କଥା ।" ମଲ୍ଲବର୍ମା କହିଲେ ।

"ସେଥିରେ ସଙ୍କୋଚ କରିବାର କ'ଣ ଅଛି ? ଆମ ରାଜା ଜଣେ ବଡ଼ କଲପ୍ରେମୀ । ସେ କଳାକାରମାନଙ୍କୁ ଖୁବ୍ ସମ୍ମାନ ପ୍ରଦର୍ଶନ କରନ୍ତି । ତମେ ମୋ କଥା ମାନି ରାଜାଙ୍କ ପାଖକୁ ନିଶ୍ଚୟ ଯାଅ ।" ଉଦୟ ଭଟ୍ଟ ମଲ୍ଲବର୍ମାଙ୍କୁ ସାହସ ଦେଇ କହିଲେ ।

ପଣ୍ଡିତଙ୍କ କଥା ଶୁଣି ସେ ଉତ୍ସାହିତ ହୋଇ ରାଜାଙ୍କ ପାଖକୁ ଗଲା । ସେଠାରେ ରାଜାଙ୍କୁ ଦର୍ଶନ କରି କହିଲା, "ମହାରାଜ, ଅନୁମତି ଦେଲେ ମୁଁ ଦୁଇ ପ୍ରକାରର ବେଶ ବଦଳାଇ ମୋର ଅଭିନୟ ପ୍ରଦର୍ଶନ କରିବି ।" ରାଜା ମଲ୍ଲବର୍ମାକୁ ସ୍ୱୀକୃତି ଦେଲେ ।



ପ୍ରଥମ ଦିନ ସେ ସନ୍ନ୍ୟାସୀ ବେଶ ଧାରଣ କରି ରାଜଦରବାରର ସମସ୍ତିଙ୍କୁ ତତ୍ତ୍ୱ ଉପଦେଶ ଦେଲା । ଉପଦେଶରେ ସଂସ୍କୃତ ଭାଷାର ଉଚ୍ଚାରଣ, ଶ୍ଲୋକ ପାଠ ଓ ବିଷୟ ସବୁର ଗମ୍ଭୀର ଆଲୋଚନା ଅତ୍ୟନ୍ତ ଶୁଦ୍ଧ ଓ ସୁନ୍ଦର ଥିଲା । ରାଜା ଖୁସି ହୋଇ ତାକୁ ଶହେ ସୁନା ମୋହର ଦେବାରୁ ସେ କହିଲା, "ମହାରାଜ, ମୁଁ ତ ସଂସାର ବିରାଗୀ ସନ୍ୟାସୀ ମୋର ଧନ କ'ଣ ହେବ ।" ଏକଥା କହି ରାଜସଭା ଛାଡ଼ି ଚାଲିଗଲା ।

ଦ୍ୱିତୀୟ ଦିନ ଏକ ନର୍ତ୍ତକୀ ବେଶରେ ଆସି ସେ ଅଦ୍ଭୁତ ନୃତ୍ୟକଳା ପ୍ରଦର୍ଶନ କରି ଦର୍ଶକଗଣଙ୍କୁ ମନ୍ତ୍ରମୁଗ୍ଧ କରିଦେଲା । ସଭାସଦମାନେ ଖୁବ୍ ପ୍ରଶଂସା କରି ତାଳି ଦେଲେ । ରାଜା ସେଦିନ ମଧ୍ୟ ଶହେ ସ୍ୱର୍ଣ୍ଣମୁଦ୍ରା ଦେଲେ । କିନ୍ତୁ ମଲ୍ଲବର୍ମା ହାତଯୋଡ଼ି କହିଲା, "ମୁଁ ଶୁଣିଛି ଆପଣ ଅତ୍ୟନ୍ତ କଳାପ୍ରେମୀ । ତେଣୁ ମୁଁ ଆପଣଙ୍କ ମନୋରଞ୍ଜନ ପାଇଁ ଆସିଛି । ଆପଣଙ୍କ କଳାପ୍ରେମ ତୁଳନାରେ ଶହେ ମୁଦ୍ରା ତୁଚ୍ଛ ମନେ ହେଉଛି । ମୋ ବିଦ୍ୟାର ଅନୁରୂପ ପୁରସ୍କାର ଦିଅନ୍ତୁ ।"

ରାଜା ଟିକିଏ ଗମ୍ଭୀର ହୋଇ କହିଲେ, "କାଲି ତମେ ଶହେ ସୁନା ମୋହର ଫେରାଇ ଦେଲ । ଆଉ ଆଜି ଶହେ ମୋହର ତମ ପାଇଁ ଯଥେଷ୍ଟ ନୁହେଁ । କଥା କ'ଣ ? ମୋତେ ତୁମର ବ୍ୟବହାର ଦେଖି ଆଶ୍ଚର୍ଯ୍ୟ ଲାଗୁଛି ।"

"ମହାରାଜ । କାଲି ମୁଁ ସନ୍ନ୍ୟାସୀ ଥିଲି ତେଣୁ ସନ୍ନ୍ୟାସୀର ଅନୁରୂପ ବୈରାଗ୍ୟ ଭାବ ପ୍ରଦର୍ଶନ କରିଥିଲି । ଆଜି ମୁଁ ନର୍ତ୍ତକୀ । ମୋର ଅନୁରୂପ ବ୍ୟବହାର ମଧ୍ୟରେ ଆପଣ ଦେଖିବେ ଭୋଗଲାଲସା ଓ ଧନଦୌଲତ ପ୍ରତି ସ୍ୱାଭାବିକ ତୃଷ୍ଣା । ତେଣୁ ମୁଁ ଆଜି ଏପରି ବ୍ୟବହାର କଲି ।" ମଲ୍ଲବର୍ମା କହିଲା ।

ମଲ୍ଲବର୍ମାର ତର୍କ ଶୁଣି ରାଜା ଆହୁରି ଖୁସି ହେଲେ ଓ ଶହେ ସ୍ଥାନରେ ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା ତାକୁ ପୁରସ୍କାର ଦେଲେ ।





# ପାଷାଣ ପ୍ରତିମା

ଇନ୍ଦ୍ରପୁରୀ ନଗରୀରେ ବଜ୍ରଗୁପ୍ତ ନାମକ ଜଣେ କୋଟିପତି ଥା'ନ୍ତି । ତାଙ୍କର ଦୁଇ ପତ୍ନୀ । ପ୍ରଥମ ପତ୍ନୀଙ୍କର ଝିଅ ବାସନ୍ତୀ ଓ ଦ୍ୱିତୀୟ ପତ୍ନୀଙ୍କର ଝିଅ ପଦ୍ମାବତୀ ଦେଖିବାକୁ ଏକାପରି । ନ ଜାଣିବା ଲୋକେ କହନ୍ତି ଯାଆଁଳା ଭଉଣୀ । ଦେଖିବାକୁ ଦୁହେଁ ସୁନ୍ଦରୀ । କିନ୍ତୁ ସ୍ୱଭାବରେ ଦୁହେଁ ଦୁହିଁଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ବାସନ୍ତୀ ଥିଲା କଠୋର ସ୍ୱଭାବର ଓ ଇର୍ଷ୍ୟୁକ । ପଦ୍ମାବତୀର ସ୍ୱଭାବ ଥିଲା କୋମଳ । ଅନ୍ୟର ଆନନ୍ଦରେ ସେ ଆନନ୍ଦ ହୁଏ । ଦୁଃଖିଦରିଦ୍ରଙ୍କ ପ୍ରତି ସେ ଥିଲା ସଦା ଦୟାଶୀଳା । ବାସନ୍ତୀ ପଦ୍ମାବତୀଠାରୁ କେତେଦିନ ମାତ୍ର ବଡ଼ ଥିଲା । ଧନୀ ପରିବାର ଯୋଗୁ ବାସନ୍ତୀର ଗର୍ବ ଥାଏ । କଥାବାର୍ତ୍ତାରେ ନମ୍ରତା ତ ଆଦୌ ନଥାଏ । କିନ୍ତୁ ସବୁ କ୍ଷେତ୍ରରେ ସେ ସବୁ ଦୋଷ ପଦ୍ମାବତୀ ମୁଣ୍ଡରେ ଲଦିଦିଏ । ସାମାନ୍ୟ କଥାରେ ପଦ୍ମାବତୀ ସହ କଳି କରେ ।

ତେଣୁ ପଦ୍ମାବତୀ ଅତି ନମ୍ରତା ସହିତ ବାସନ୍ତୀକୁ କୁହେ, "ଦିଦି, ତମେ ସବୁବେଳେ କାହିଁକି ମୋ ସହିତ କଳି କରୁଛ? ଯଦି ଆମେ ସ୍ନେହ ଶ୍ରଦ୍ଧାର ସହିତ ଚଳିବା, ଆମେ ବି ଶାନ୍ତିରେ ରହିବା ଓ ଅନ୍ୟମାନେ ମଧ୍ୟ ଆମକୁ ଆଦର କରିବେ ।"

"ଅନ୍ୟ କଥା ଛାଡ଼ ଦେ । ତୁ ମୋତେ ପ୍ରଥମ ଆଦର କରି ବ୍ୟବହାର କର । ଅନ୍ୟଙ୍କ ସହିତ ମୋ ପରି ବ୍ୟବହାର କରିବାକୁ ଶିଖ ।" ବାସନ୍ତୀ କହେ ।

ବାସନ୍ତୀ ପଦ୍ମାବତୀ ପରି ବ୍ୟବହାର କରିବା ଅସମ୍ଭବ ଥିଲା । ପଦ୍ମାବତୀ ମଧ୍ୟ ବାସନ୍ତୀ ପରି ବ୍ୟବହାର କରିପାରେ ନାହିଁ । ତେଣୁ ଦୁଇଜଣଙ୍କ ମଧ୍ୟରେ ମାନସିକ ଦୂରତା କ୍ରମେ ବଢ଼ି ଚାଲିଲା ।

ଶ୍ରୀମତୀ ଆଶାଲତା ବେହେରା



ଥରେ ଚନ୍ଦ୍ରକାନ୍ତ ନାମରେ ଜଣେ ଶିଳ୍ପୀ ବଜ୍ରଗୁପ୍ତଙ୍କ ଘରେ ଆସି ପହଞ୍ଚିଲା।

ନିଜର ବିଶାଳ ଭବନର ପ୍ରାଙ୍ଗଣରେ ଗୋଟିଏ କଳାମନ୍ଦିର ନିର୍ମାଣ କରିବା ପାଇଁ ବଜ୍ରଗୁପ୍ତ ଇଚ୍ଛା ପ୍ରକାଶ କଲେ।

ଚନ୍ଦ୍ରକାନ୍ତ ଥିଲା ଯୁବକ ଓ ଶିଳ୍ପୀକଳାରେ ଦକ୍ଷ। ଦେଖିବାକୁ ଥିଲା ସୁନ୍ଦର। ନିଜ କାର୍ଯ୍ୟ ବହୁତ ନିଷ୍ଠାର ସହିତ କରୁଥାଏ। ବାସନ୍ତୀ ଓ ପଦ୍ମାବତୀ ତାହାର ଶିଳ୍ପ ଦେଖିବା ପାଇଁ ପ୍ରତିଦିନ କଳାମନ୍ଦିରକୁ ଯାଉଥା'ନ୍ତି। ଦୁହେଁ ଶିଳ୍ପକଳା ସମ୍ବନ୍ଧରେ ଚନ୍ଦ୍ରକାନ୍ତକୁ ଅନେକ ପ୍ରଶ୍ନ ପଚାରନ୍ତି। ପ୍ରଶ୍ନ ପଚାରିବାରେ ମଧ୍ୟ ପଦ୍ମାବତୀ ନମ୍ରଭାବ ସହିତ ପଚାରେ, କିନ୍ତୁ ବାସନ୍ତୀ ତାକୁ ମାଲିକାଣୀ ଭଳି ପଚାରେ। ଚନ୍ଦ୍ରକାନ୍ତ ସେସବୁ ପ୍ରତି ନଜର ନ ଦେଇ ଦୁହିଁଙ୍କୁ ସମାନ ଭାବରେ ଉତ୍ତର ଦିଏ।

ଥରେ ଥରେ ବାସନ୍ତୀ ମନରେ ଭାବେ ଯେ ସାଧାରଣ ଲୋକେ ଆଦରର ସହିତ ପଦ୍ମାବତୀ ସହିତ ବ୍ୟବହାର କରନ୍ତି ଓ ତା' ସହିତ ଯଥାତଥା ବ୍ୟବହାର କରନ୍ତି। ଅଥଚ ଚନ୍ଦ୍ରକାନ୍ତ ଦୁହିଁଙ୍କ ପ୍ରତି ସମାନ ବ୍ୟବହାର କରୁଛି। ତେଣୁ ସେ କୌତୁହଳୀ ହୋଇ ଥରେ ଥରେ ଚନ୍ଦ୍ରକାନ୍ତ ପାଖକୁ ଏକା ଯାଏ।

ଏମିତି ଥରେ ସେ ଏକା ଯାଇଥାଏ; ଚନ୍ଦ୍ରକାନ୍ତ ତାକୁ ଆଶ୍ଚର୍ଯ୍ୟ କରି କହିଲା, "ଆପଣ ଦୁଇଜଣଙ୍କ ମଧ୍ୟରୁ ମୁଁ ଆପଣଙ୍କୁ ଅଧିକ ପସନ୍ଦ କରେ।"

ବାସନ୍ତୀ କହିଲା, "ତମେ ବୋଧେ ମିଛ କହୁଛ।"

"ମୋର ମିଛ କହିବାର କୌଣସି ଆବଶ୍ୟକତା ନାହିଁ।" ଚନ୍ଦ୍ରକାନ୍ତ କହିଲା।

ବାସନ୍ତୀ ଚନ୍ଦ୍ରକାନ୍ତ ପ୍ରତି ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କରି କହିଲା, "ଦେଖ, ତମ୍ଭେ ଜଣେ କଳାକାର ଓ ଏଠାକୁ ପାରିଶ୍ରମିକ ନେଇ କାମ କରିବାକୁ ଆସିଛ। ତେଣୁ ସେ ଦିଗରୁ ଦେଖିଲେ ଆମ ଭିତରେ ସମ୍ପର୍କ ହେଉଛି ମାଲିକ ଓ କର୍ମଚାରୀର ସମ୍ପର୍କ। ତେଣୁ ମୁଁ ତୁମ ସହିତ ସେହିପରି କଥାବାର୍ତ୍ତା କରେ। କିନ୍ତୁ ପଦ୍ମାବତୀ ତୁମ ସହିତ କଥାବାର୍ତ୍ତା କରେ



ଯେପରି ସେ କର୍ମଚାରୀ ଓ ତୁମେ ମାଲିକ । ଅବଶ୍ୟ ତା'ର ବ୍ୟବହାର ତୁମକୁ ଅଧିକ ଭଲ ଲାଗିବ ।"

ଚନ୍ଦ୍ରକାନ୍ତ ବହୁତ ନମ୍ର ସହକାରେ କହିଲା, "ନା, ନା, ଏକଥା ଠିକ୍ ନୁହେଁ । ତୁମେ ରୂପବତୀ । ଅହଂକାର ତୁମ ରୂପକୁ ଅଧିକ ବୃଦ୍ଧି କରିଥାଏ । ମୁଁ ତୁମ ସୌନ୍ଦର୍ଯ୍ୟରେ ଏତେ ମୁଗ୍ଧ ଯେ ତୁମେ ମୋତେ ଯାହା କହିଲେ ବି ଭଲ ଲାଗିବ । ବାସନ୍ତୀ ମୁଁ ତୁମକୁ ଭଲ ପାଏ ଏକଥା ସତ୍ୟ ।"

ବାସନ୍ତୀ ଏକଥା ଶୁଣି ରାଗିଯାଇ କହିଲା, "କ'ଣ ତମେ ଏକଥା ଜାଣନାହିଁ ଯେ ଭଲ ପାଇବାର ପ୍ରଶ୍ନ ଉଠିଲେ ମୁଁ ଜଣେ ଧନୀ ଯୁବକକୁ ଭଲ ପାଇବି, ତମପରି ଜଣେ କାରିଗର ଯୁବକକୁ ନୁହେଁ ।"

"ମୁଁ ଏକଥା ଜାଣେ; ହେଲେ ମୋର ସ୍ନେହ ଓ ପ୍ରେମ ଏକଥା ଜାଣନ୍ତି ନାହିଁ ।" ଚନ୍ଦ୍ରକାନ୍ତ କହିଲା ।

ବାସନ୍ତୀ ମନେ ମନେ ଖୁବ୍ ଖୁସି ହେଲା । ଏତେଦିନ ପରେ ଅନ୍ତତଃ ଜଣେ ଲୋକ ପଦ୍ମାବତୀକୁ ଉପେକ୍ଷା କରି ତାକୁ ଭଲ ପାଉଛି । କିନ୍ତୁ ବାହାରେ ସେ ଚନ୍ଦ୍ରକାନ୍ତ ସହିତ ସାଧାରଣ କାରିଗର ଭାବରେହିଁ ବ୍ୟବହାର କଲା ।

ଦିନେ ଚନ୍ଦ୍ରକାନ୍ତ ପଚାରିଲା, "ମୋତେ ଏତେ ନିମ୍ନ ଦୃଷ୍ଟିରେ ତମେ କାହିଁକି ଦେଖୁଛ ?"

"ଗରିବମାନେ ଧନୀମାନଙ୍କୁ ପ୍ରଶଂସା କରିବା ସ୍ୱାଭାବିକ୍ ଏବଂ ଧନୀକମାନେ ଗରିବଙ୍କୁ ଉପେକ୍ଷା କରିବା ମଧ୍ୟ ସ୍ୱାଭାବିକ୍ । ତା'ଛଡ଼ା ତମେ ଯଦି ମୋତେ ଭଲ ପାଉଛ ତେବେ ଠିକ୍ ଅଛି । କିନ୍ତୁ ଜୀବନରେ କେବେ ମୋତେ ବିବାହ କରିବା ସ୍ୱପ୍ନ ଯେପରି ନ ଦେଖ ।" ବାସନ୍ତୀ କହିଲା ।

କିଛିଦିନ ବିତିଗଲା । ଇତିମଧ୍ୟରେ ପଦ୍ମାବତୀ ତା'ର ମାମୁଁ ଘର ରାମପୁରକୁ ଯାଇଥାଏ । ସେଠାରେ ଦୁଇବର୍ଷ ଧରି ବର୍ଷା ନ ହେବାରୁ ମରୁଡ଼ି ପଡିଥାଏ । ପଦ୍ମାବତୀ ତା'ର ଜନ ମାମୁଁଙ୍କୁ କହିଲା, "ଆପଣମାନେ ଯଦି କୂଅ ଖୋଳନ୍ତେ ତେବେ ଜଳକଷ୍ଟ କିଛିଟା ତ ଦୂର ହୁଅନ୍ତା ।"



ପୋତାଧନ ମଧ୍ୟ ମିଳିଲା । ଗ୍ରାମବାସୀଙ୍କ ଆନନ୍ଦ ଆଉ ଦେଖେ କିଏ ? ସେମାନେ ତ ପଦ୍ମାବତୀକୁ ସାକ୍ଷାତ୍ ଦେବୀ ଜ୍ଞାନ କଲେ । ସମସ୍ତେ ନିଜ ଭିତରେ ଆଲୋଚନା କରି ଠିକ୍ କଲେ କି ପଦ୍ମାବତୀର ପାଷାଣ ପ୍ରତିମା ଗ୍ରାମରେ ପ୍ରତିଷ୍ଠା ହେଲେ ଗ୍ରାମରେ କେବେ ଜଳକଷ୍ଟ ପଡ଼ିବ ନାହିଁ ?

ଗ୍ରାମର ମୁଖ୍ୟବ୍ୟକ୍ତିମାନେ ବଜ୍ରଗୁପ୍ତଙ୍କ ପାଖକୁ ଯାଇ ସେମାନଙ୍କର ଇଚ୍ଛା ପ୍ରକାଶ କଲେ । ବଜ୍ରଗୁପ୍ତ ବହୁତ ଖୁସି ହୋଇ କହିଲେ, "ଜୀବନ କାଳରେ ଯାହାର ମୂର୍ତ୍ତି ସ୍ଥାପିତ ହୁଏ ସେ ତ ଖୁବ୍ ଭାଗ୍ୟବତୀ ।" ସେ ତେଣୁ ପଦ୍ମାବତୀର ମୂର୍ତ୍ତିଗଠନର ଭାର ଚନ୍ଦ୍ରକାନ୍ତକୁ ଦେଲେ ।

"ଆମେ ଅନେକ ସ୍ଥାନରେ ଖୋଳାଇ ଚେଷ୍ଟା କରି ଦେଖିଲୁ ଯେ ପାଣି କେଉଁଠି ହେଲେ ଝରୁନାହିଁ ।" ମାମୁଁମାନେ କହିଲେ ।

ତା'ପରେ ପଦ୍ମାବତୀ ସ୍ୱପ୍ନରେ ଦିନେ ଦେଖିଲା ସେହି ଗ୍ରାମର କେତେକ ସ୍ଥାନରେ ପୋତାଧନ ଅଛି ଓ କେତେକ ସ୍ଥାନରେ ଜଳ ସ୍ରୋତ ଅଛି । ଏକଥା ପଦ୍ମାବତୀ ତା'ର ମାମୁଁମାନଙ୍କୁ କହିଲା ଓ ଗ୍ରାମବାସୀଙ୍କୁ ମଧ୍ୟ କହିଲା । ଗ୍ରାମବାସୀମାନଙ୍କୁ ଓ ମାମୁଁମାନଙ୍କୁ ନେଇ ପଦ୍ମାବତୀ ମହା ଉତ୍ସାହର ସହିତ ସେହି ସେହି ସ୍ଥାନମାନ ଖୋଳାଇଲା । ସତକୁ ସତ ପାଣି ସବୁ କୂଅରେ ଝରିଲା ଓ ଜଳକଷ୍ଟ ଦୂର ହେଲା । ତା'ଛଡ଼ା କେତେକ ସ୍ଥାନରୁ

ପଦ୍ମାବତୀ ବିଷୟରେ ଏସବୁ ଶୁଣି ବାସନ୍ତୀ ଈର୍ଷ୍ୟାରେ ଜଳି ଉଠିଲା । ସେ କେତେଜଣ ଗୁଣ୍ଡାଙ୍କୁ ଡାକି ପଇସା ଦେଇ କିଛି ଶିଖାଇ ଦେଲା । ଏଣେ ରାମପୁରରେ ମୂର୍ତ୍ତି ଗଠନ ଚାଲିଥାଏ । ଠିକ୍ ସେହି ସମୟରେ ରାମପୁରରେ ଚୋରି, ଡକାୟତି ଓ ନାନା ପ୍ରକାର ଅନିଷ୍ଟକାରକ ଘଟଣାମାନ ଘଟୁଥାଏ ଏଇ ଗୁଣ୍ଡାମାନଙ୍କ ଦ୍ୱାରା । ପୁଣି ଜଣେ ଗୁଣ୍ଡା ବାବାଜୀ ବେଶ ଧରି ଗ୍ରାମରେ ପ୍ରଚାର କଲା ଯେ ଗ୍ରାମରେ ଏସବୁ ଅନିଷ୍ଟ ହେଉଛି ଏଇ ମୂର୍ତ୍ତି ଯୋଗୁ ।" ଗ୍ରାମବାସୀମାନେ ମହା ଅସୁବିଧାରେ ପଡ଼ିଲେ ।



ଏସବୁ କଥା ଯାଇ ବଜ୍ରଗୁପ୍ତଙ୍କ କାନରେ ପଡ଼ିଲା । ସେ ଚନ୍ଦ୍ରକାନ୍ତର ଗୁରୁଶିଳ୍ପୀଙ୍କ ପାଖକୁ ଯାଇ କହିଲେ, "ଆଚାର୍ଯ୍ୟ, ଆପଣଙ୍କର ପ୍ରଶଂସା ଓ ଗୁଣ ଯୋଗୁ ମୁଁ ଚନ୍ଦ୍ରକାନ୍ତକୁ ରଖିଲି । କିନ୍ତୁ ଏବେ ମୋ ଝିଅର ପ୍ରତିମା ତିଆରି ହେବାରୁ ସବୁ ଅନିଷ୍ଟ ଉପୁଜୁଛି କାହିଁକି ? ମୋ ଝିଅ ତ ଅତି ସାଧୁ ସ୍ୱଭାବର । ତେଣୁ ମନେ ହେଉଛି ପ୍ରତିମା ତିଆରି କରିବାରେ କିଛି ତ୍ରୁଟି ରହିଛି ।"

ବଜ୍ରଗୁପ୍ତଙ୍କ କଥା ଶୁଣି ଗୁରୁ ମଧ୍ୟ ଟିକିଏ ଆଶ୍ଚର୍ଯ୍ୟ ହେଲେ । ସେ କହିଲେ, "ଚନ୍ଦ୍ରକାନ୍ତ ମୋ ଶିଷ୍ୟମାନଙ୍କ ମଧ୍ୟରେ ସର୍ବୋତ୍ତମ । ତା'ର ଶିଳ୍ପ ତ ତ୍ରୁଟିପୂର୍ଣ୍ଣ ହେବା କଥା ନୁହେଁ । ବରଂ ଚାଲନ୍ତୁ ଘଟଣାସ୍ଥଳକୁ ଯାଇ ଦେଖିବା ।"

ଏବେ ବଜ୍ରଗୁପ୍ତ, ଗୁରୁ ଓ ପଦ୍ମାବତୀ ରାମପୁର ଗଲେ । ପ୍ରତିମାକୁ ଦେଖି ଗୁରୁ କହିଲେ, "ଚନ୍ଦ୍ରଗୁପ୍ତ, ଆପଣଙ୍କ କଥା ସତ । ଏହି ପ୍ରତିମାରେ ତ୍ରୁଟି ଅଛି । ପଦ୍ମାବତୀର ରୂପ ସହିତ ମୌଳିକ ଭାବରେ କିଛି ଭିନ୍ନତା ଦୃଷ୍ଟି ହେଉଛି ।"

ସେ ରାଗିଯାଇ ଚନ୍ଦ୍ରକାନ୍ତକୁ ପାଖକୁ ଡାକି କହିଲେ, "ମୁଁ ଭାବିଥିଲି ଶିଷ୍ୟ ଭାବରେ ତୁ ମୋର ଯଶକୁ ଆହୁରି ବୃଦ୍ଧି କରିବୁ । କିନ୍ତୁ ଏବେ ଦେଖୁଛି ତୁ ମୋର ଯଶକୁ କଳଙ୍କିତ କରୁଛୁ । ଏ ମୂର୍ତ୍ତି ତ୍ରୁଟିପୂର୍ଣ୍ଣ ଅଟେ ।"

ଚନ୍ଦ୍ରକାନ୍ତ ଗୁରୁଙ୍କୁ ପ୍ରଣାମ କରି କହିଲା, "ଗୁରୁଦେବ, ତ୍ରୁଟି ମୋର ଶିଳ୍ପବିଦ୍ୟାର ନୁହେଁ, ମୋ ନଜର, ମୁଁ ଯେଉଁ ମୂର୍ତ୍ତି କରିଛି ତାହା ପଦ୍ମାବତୀର ନୁହେଁ, ବାସନ୍ତୀର ।"

"କିନ୍ତୁ, ତୁ ଏପରି କାହିଁକି କଲୁ ?" ଗୁରୁ ପଚାରିଲେ ।

"ଜ୍ୟେଷ୍ଠ ଭଉଣୀ ପଦ୍ମାବତୀର ପ୍ରତିମା ପ୍ରତିଷ୍ଠା ହେବାର ଦେଖି ବାସନ୍ତୀର ହୃଦୟ ଦୁଃଖ ଓ ଈର୍ଷ୍ୟାରେ ପୂର୍ଣ୍ଣ ହେଲା । ମୁଁ ବାସନ୍ତୀକୁ ଭଲପାଏ । ଦୁହିଁଙ୍କ ଭିତରେ ବିଶେଷ ତଫାତ୍ ନାହିଁ ବୋଲି ମୁଁ ପଦ୍ମାବତୀ ବଦଳରେ

ବାସନ୍ତୀର ପ୍ରତିମା କରିଥିଲି । ମୁଁ ଜାଣି ନଥିଲି ଯେ ତ୍ରୁଟିପୂର୍ଣ୍ଣ ସ୍ୱଭାବର ବ୍ୟକ୍ତିର ପ୍ରତିମା ନିର୍ମାଣ କଲେ ମଧ୍ୟ ତାହାର ଫଳ ସମସ୍ତଙ୍କ ପାଇଁ ଅନିଷ୍ଟକାରକ ହେବ ବୋଲି । ଆପଣ ମୋତେ କ୍ଷମା କରନ୍ତୁ ।" ଏକଥା କହି ଚନ୍ଦ୍ରକାନ୍ତ ପୁଣି ଗୁରୁଙ୍କର ଚରଣ ସ୍ପର୍ଶ କଲା ।

ବାସନ୍ତୀ ଯେତେବେଳେ ଏସବୁ କଥା ଶୁଣିଲା ତା'ର ମନ ଆତ୍ମଗ୍ଲାନିରେ ଭରିଗଲା । ସେ ବୁଝିପାରିଲା ଯେ ନିଜ ସ୍ୱଭାବରେ ତ୍ରୁଟି ଥିବା ହେତୁରୁ ସମସ୍ତ ସ୍ଥାନରେ ତା'ର ବଦନାମ ହେଉଛି । ସେ ପଦ୍ମାବତୀ ପାଖକୁ ଯାଇ କହିଲା, "ଭଉଣୀ, ଦେଖ୍ ମୁଁ ଯଦି ଏବେ ଇର୍ଷ୍ୟା ଦ୍ୱେଷ ଛାଡ଼ି ସତ୍‌ମାର୍ଗରେ ନ ଚଳିବି ତାହେଲେ ମୋ ଯୋଗୁ କେବଳ ଗ୍ରାମ ନୁହେଁ ବରଂ ସାରା ଦେଶର ଅନିଷ୍ଟ ହେବ । ତେଣୁ ତୁ ଆଜିଠାରୁ ମୋତେ ଯାହା କହିବୁ ମୁଁ କରିବି । ମୋତେ ତୁ ଉତ୍ତମ ମାର୍ଗରେ ନେଇଯିବୁ ।"

ଝିଅର ଏପରି ପରିବର୍ତ୍ତନ ଦେଖି ବଜ୍ରଗୁପ୍ତ ମଧ୍ୟ ବହୁତ ଖୁସି ହେଲେ । ସେ ଚନ୍ଦ୍ରକାନ୍ତକୁ ମଧ୍ୟ ଭଲ ପାଇଲେ; ଏଇଥିପାଇଁ ଯେ ସବୁ ଖରାପ ଗୁଣ ବାସନ୍ତୀର ଥିବା ସତ୍ତ୍ୱେ ମଧ୍ୟ ଚନ୍ଦ୍ରକାନ୍ତ ତାକୁ ଭଲ ପାଉଛି । ତା'ପରେ ସେ ଦୁଇଜଣଙ୍କର ବିବାହ ମଧ୍ୟ କରାଇ ଦେଲେ ।

ଚନ୍ଦ୍ରକାନ୍ତ ସହିତ ବିବାହ ହେବା ପରେ ବାସନ୍ତୀ ନିଜେ ଉପସ୍ଥିତ ରହି ସ୍ୱାମୀ ଦ୍ୱାରା ପଦ୍ମାବତୀର ମୂର୍ତ୍ତି ଗଢ଼ାଇ ରାମପୁରରେ ପ୍ରତିଷ୍ଠା କରାଇଲା । ଗ୍ରାମବାସୀମାନେ ବୁଝିଲେ, ବାସନ୍ତୀର ଏଇ ପରିବର୍ତ୍ତନ ଚନ୍ଦ୍ରକାନ୍ତ ଯୋଗୁ । ତେଣୁ ସେମାନେ କୁହନ୍ତି, "ଚନ୍ଦ୍ରକାନ୍ତ ବଡ଼ ଶିଳ୍ପୀ । କାରଣ ସେ କେବଳ ମଣିଷର ରୂପକୁ ପାଷାଣରେ ଫୁଟାଏ ତାହା ନୁହେଁ । ଆହୁରି ମଧ୍ୟ ପାଷାଣ ହୃଦୟ ଥିବା ଲୋକ ମଧ୍ୟରେ ପ୍ରକୃତ ମନୁଷ୍ୟତ୍ୱ ପ୍ରକଟ କରାଇ ପାରେ ।"





# ଲୁଣର କରାମତି

ଗୋଟିଏ ଗ୍ରାମରେ ରମନାଥ ନାମରେ ଜଣେ ଗୃହସ୍ଥ ଥାଏ । ତା'ର ଥା'ନ୍ତି ପୁଅଟିଏ ଓ ଝିଅଟିଏ । କିଛି ବର୍ଷ ପରେ ପୁଅର ବିବାହ ହେଲା; ବୋହୂଟିଏ ଘରକୁ ଆସିଲା । ଏବେ ପରିବାରରେ ତିନିଜଣ ସ୍ତ୍ରୀଲୋକ ମା, ଝିଅ ଓ ବୋହୂ ।

ବୋହୂ ଆସିବା ପରେ ଛୋଟ ଛୋଟ ସମସ୍ୟା ଲାଗି ରହିଲା । କାରଣ ଘରର ଭଲ ମନ୍ଦ ବିଷୟ ମା' ଓ ଝିଅ ବୋହୂକୁ ଶିଖାଉଥା'ନ୍ତି । ବୋହୂ ଥରେ ଶିଖିନେଇ ଥରେ ଭୁଲିଯାଏ । କାରଣ ସେ ସମ୍ପୂର୍ଣ୍ଣ ଭିନ୍ନ ଏକ ପରିବାରରୁ ଆସିଥାଏ । ଏମାନଙ୍କର ଚାଲିଚଳଣି କଥାବାର୍ତ୍ତା ଶିଖିବାକୁ ସମୟ ଲାଗିଲା । ଥରକରେ ନ ଶିଖିଲେ ପୁଣି ଥରେ ଶିଖାଇ ଦିଆଯାଏ ।

ଦିନେ ରମନାଥଙ୍କର ଶଳା ତାଙ୍କ ଘରକୁ ବୁଲି ଆସିଥାନ୍ତି । ରମନାଥଙ୍କ ସ୍ତ୍ରୀ ଭାଇଙ୍କୁ ଖୁବ୍ ସମ୍ମାନ କରୁଥା'ନ୍ତି ତେଣୁ ଖୁବ୍ ସଜାଗ ଥା'ନ୍ତି ଯେପରି ସେମାନଙ୍କ ଭୁଲରୁ କିଛି ଅସୁବିଧା ନ ହୁଏ ।

ଦିନେ ସେ ଗରା ନେଇ ପାଣି ଆଣିବାକୁ ଗଲାବେଳେ ବୋହୂକୁ କହିଗଲେ, "ବୋହୂ, ମୁଁ ଚୁଲିରେ ଡାଲି ବସାଇ ଦେଇଛି । ଟିକିଏ ପରେ ଦୁଇ ଚାମୁଚ ଲୁଣ ପକାଇ ଦେବୁ । ମନେ ରଖ, ଭୁଲିବୁ ନାହିଁ ।"

ଦୁଇଦିନ ଆଗରୁ ବୋହୂ ଡାଲିରେ ଲୁଣ ପକାଇବାକୁ ଭୁଲି ଯାଇଥିଲା । ତେଣୁ ସେ ବୋହୂକୁ ବାରମ୍ବାର କହିଗଲେ । ସେତେବେଳେ ବୋହୂ ଘର ଖରକୁଥିଲା । କାମ ଶେଷ ହେବା ପରେ ସେ ଡାଲିରେ ଲୁଣ ପକାଇ ପୁଣି ଅନ୍ୟ କାମ କରିବାକୁ ଚାଲିଗଲା ।

କିଛି ସମୟ ପରେ ଝିଅ ଗୀତା ଆସିଲା । ହାତଗୋଡ଼ ଧୋଇ ରୋଷେଇ ଘରକୁ ଯାଇ

ପଚାଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଫୋଟିଲା ଡାଲି ସିଝୁଛି । ସେ ଭାବିଲା, "ମା'ର ଅଭ୍ୟାସ ହୋଇଛି ଡାଲି ବସାଇ ଲୁଣ ପକାଇବାକୁ ଭୁଲିଯାଏ । ମାମୁଁ ଆସିଛନ୍ତି । ଭଲ ଡାଲି ହେବା ଦରକାର । ଏକଥା ଭାବି ସେ ମଧ୍ୟ କିଛି ଲୁଣ ପକାଇ ଦେଇ ନିଜ କାମରେ ଚାଲିଗଲା । ଡାଲି ସିମିଝି ସିଝୁଥାଏ ।

ଇତିମଧ୍ୟରେ ରାମନାଥଙ୍କ ପତ୍ନୀ ପାଣି ଆଣି ଫେରି ଆସିଲେ । ଚୁଲି ଉପରେ ଏବେ ମଧ୍ୟ ଡାଲି ସିଝୁଛି ଦେଖି ଭାବିଲେ, "ଏହି ବୋହୂଟା ସବୁ ଭୁଲିଯାଏ । ତାକୁ ବାର ବାର ମନେପକାଇ ଦେବା ଅପେକ୍ଷା ନିଜେ ସବୁ କରିବା ଭଲ ।" ଏକଥା କହି ସେ ପୁଣି ପୁଳାଏ ଲୁଣ ଡାଲିରେ ଛାଡ଼ି ଦେଲେ ।

ଭାତ ଖାଇବା ବେଳେ ରାମନାଥ ଓ ତାଙ୍କ ଶଳା ଏକାଠି ବସିଲେ । ମୁହଁରେ ଗୁଣ୍ଡାଏ ଭାତ ରଖି ସେ କହିଲେ, "ଏ କ'ଣ ଡାଲିରେ ଲୁଣ ପକାଇବାକୁ ଭୁଲିଗଲ କି ?"

"କି କଥା ମୁଁ ତ ନିଜେ ଲୁଣ ପକାଇଛି" ମା' କହିଲେ । ଗୀତା କହିଲା "ମୁଁ ବି ତ ବଡ଼ ଚାମଚରେ ଦୁଇ ଚାମଚ ଲୁଣ ଦେଇଛି ଭାବିଲି ଯେ ମା ବୋଧେ ଭୁଲି ଯାଇଛି ଆଉ ଆଜି ପୁଣି ମାମୁଙ୍କର ଆସିବାର ଅଛି । ମୋର ଭୁଲ ମୁଁ ମା'ଙ୍କୁ ନ ପଚାରି ଲୁଣ ପକାଇ ଦେଲି ।

"ମା', ଆପଣ ତ ଲୁଣ ପକାଇବା ପାଇଁ ମୋତେ କହି ଯାଇଥିଲେ, ତେଣୁ ମୁଁ ତ ପ୍ରଥମ ପକାଇଥିଲି ।" ବୋହୂ କହିଲା ।

"ସେଇଥିପାଇଁ ଏ ଡାଲି କଟକଟ ଲୁଣିଆ ହୋଇ ଯାଇଛି ।" ମଜାକରି ମାମୁଁ କହିଲେ ।

ପରିବାରରେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଏକତାର ଅଭାବ ଦେଖି ରାମନାଥ ଦୁଃଖିତ ହେଲେ । ସେ କହିଲେ, "ଆଜିଠାରୁ ସମସ୍ତେ ନିଜ କାମ ନିଜେ କରିବ । ଜଣକ କାମ ଆଉ ଜଣେ କରିବ ନାହିଁ ।"

ସେହି ଦିନଠାରୁ କାମଦାମରେ ଆଉ କେବେ କୌଣସି ଗୋଳମାଳ ହୋଇ ନାହିଁ ।"





# ଶିବ ପୁରାଣ

ରତିଙ୍କର ପ୍ରାର୍ଥନା ଶୁଣି ଶିବ କହିଲେ,' "କାମଦେବଙ୍କ ଉପରେ ବ୍ରହ୍ମାଙ୍କର ମଧ୍ୟ ଅଭିଶାପ ଥିଲା । କିନ୍ତୁ ମୁଁ ତୁମର ପାତିବ୍ରତ୍ୟ ଧର୍ମ ଭଙ୍ଗ ହେବାକୁ କୌଣସି ମତେ ଦେବିନାହିଁ । ମୁଁ ତାଙ୍କୁ ଜୀବନଦାନ କରୁଛି । ସାରା ଜଗତ ତାଙ୍କୁ ଦେହହୀନ ଦେଖିଲେ ମଧ୍ୟ ତୁମେ ତାଙ୍କୁ ଦେହ ସହ ପ୍ରାପ୍ତ କରିବ ।"

ରତିଦେବୀ ବିସ୍ମିତ ହୋଇ ଦେଖିଲେ, ଶିବ ଏହି ବାଣୀ ଦେବା ମାତ୍ରେ କାମଦେବଙ୍କ ରୂପ ରତିଦେବୀଙ୍କ ଆଖି ଆଗରେ ପୁନର୍ବାର ଜାଜ୍ଜ୍ୱଲ୍ୟମାନ ହୋଇ ଉଠିଲା । କାମଦେବ ଓ ରତିଦେବୀ ଶିବଙ୍କୁ ପ୍ରଣାମ କରି ସେଠାରୁ ବିଦାୟ ନେଇ ଚାଲିଗଲେ ।

କାମଦେବ ଜୀବିତ ହେବା ପରେ ଶିବ ତପସ୍ୟା ତ୍ୟାଗ କରି କୈଳାସରେ ରୁଦ୍ରଗଣଙ୍କ ସହ ଅବସ୍ଥାନ କଲେ । ସେ ଅଗ୍ନିଙ୍କୁ ଆଦେଶ ଦେଲେ, "ତମେ ଆଜିଠାରୁ ଗଛ, ପର୍ବତ ତଥା ସମୁଦ୍ର ମଧ୍ୟରେ ଗୁପ୍ତ ଭାବରେ ରହିବ ।" ସେହି ଦିନରୁ ଅଗ୍ନି ଏ ସମସ୍ତ ବସ୍ତୁ ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ରହିଥାନ୍ତି । କେବେ କେବେ ହଠାତ୍ ଏସବୁ ବସ୍ତୁରାଜି ମଧ୍ୟରୁ ଅଗ୍ନିଙ୍କ ଆବିର୍ଭାବ ଘଟିବାର ଦେଖାଯାଏ । ଇନ୍ଦ୍ର ଓ ଅନ୍ୟାନ୍ୟ ଦେବଗଣ ଦୂରରୁ ଲକ୍ଷ୍ୟ କଲେ ଶିବଙ୍କର ମନ ପାର୍ବତୀଙ୍କ ଆଡ଼କୁ କ୍ରମେ ଆକର୍ଷିତ ହେଉଛି । ଶିବ ମନେ ମନେ ପାର୍ବତୀଙ୍କ ସହିତ ବିବାହ କରିବା ପାଇଁ ନିଷ୍ପତ୍ତି କଲେ ।




ସେଦିନର ସେହି ଭୟଙ୍କର ଘଟଣା ପରେ ପାର୍ବତୀ ଭୟଭୀତା ହୋଇ ଘରକୁ ଫେରିଗଲେ ଓ ପିତାମାତାଙ୍କୁ ସବୁ ଘଟଣା କହିଲେ । ସେମାନେ ଭାବିଲେ ଯେ ଯାହାହେଉ ତାଙ୍କ କନ୍ୟା ତ ବର୍ତ୍ତି ଯାଇଛି ! ପାର୍ବତୀ ସର୍ବଦା ଶିବଙ୍କ କଥାହିଁ ଭାବୁଥା'ନ୍ତି । ଖିଆପିଆରେ ତାଙ୍କର ମନ ନଥାଏ । ପିତାମାତା ତାଙ୍କୁ ବହୁତ ସାନ୍ତ୍ୱନା ଦେଉଥା'ନ୍ତି ।

ପାର୍ବତୀଙ୍କ ଏକାଗ୍ରତା ଦେଖି ବନ ପର୍ବତ ଝରଣା ଇତ୍ୟାଦି ମଧ୍ୟ ଅଭିଭୂତ ହେଲ ଭଳି ମନେ ହେଉଥାଏ । ସେ ଯୁଆଡ଼େ ଯାଉଥାନ୍ତି, ସେଠାରେ ଏକପ୍ରକାର ଶାନ୍ତ ସୌମ୍ୟ ଓ ଭକ୍ତିଭାବର ତରଙ୍ଗ ଖେଳି ଯାଉଥାଏ ।

ଦିନେ ହିମବାନଙ୍କ ଘରକୁ ନାରଦ ଆସିଥା'ନ୍ତି । ସେ ସବୁ ଶୁଣି କହିଲେ, "ଶିବ ଅବଶ୍ୟ ଦିନେ ନା ଦିନେ ଏ ବିଷୟରେ ସ୍ୱୀକୃତ ହେବେ ।" ତା'ପରେ ନାରଦ ଶିବପଞ୍ଚାକ୍ଷରୀ ମନ୍ତ୍ର ଜପ କରିବାକୁ ପାର୍ବତୀଙ୍କୁ ଦେଲେ ।

ପାର୍ବତୀ ସେହି ଦିନଠାରୁ ଶିବପଞ୍ଚାକ୍ଷରୀ ଜପ କରିବାକୁ ଲାଗିଲେ । ନାରଦଙ୍କ କଥା ଅନୁସାରେ ଜଙ୍ଗଲ ମଧ୍ୟରେ ଶୃଙ୍ଗତୀର୍ଥ ନାମକ ସ୍ଥାନରେ ସେ ନିଷ୍ଠାର ସହିତ ଜପ କରୁଥା'ନ୍ତି । କ୍ରମେ ସେ ତପସ୍ୟାରେ ମଗ୍ନ ହୋଇଗଲେ । ପ୍ରଥମେ ଅଳ୍ପ ଆହାର କରୁଥିଲେ, ପରେ କେବଳ ପତ୍ର ଖାଇ ବଞ୍ଚିଲେ । ତା'ପରେ ପତ୍ର ଖାଇବା ମଧ୍ୟ ଛାଡ଼ି ଦେବାରୁ ତାଙ୍କୁ "ଅପର୍ଣ୍ଣା" ବୋଲି ସମସ୍ତେ କହିଲେ ।

ଦିନେ ମେନକା ଓ ହିମବାନ୍ ଝିଅକୁ ଦେଖିବାକୁ ଆସିଲେ । ଝିଅର ଦୁର୍ବଳ ଦେହ ଓ କଠୋର ତପସ୍ୟା ଦେଖି ସେମାନେ ଦୁଃଖିତ ହୋଇ କହିଲେ, "ଝିଅ, ତୁ ଏପରି କଠିନ ତପସ୍ୟା କରିବା ଦ୍ୱାରା ଶରୀରକୁ କଷ୍ଟ ଦେଉଛୁ । ତା'ପରେ ଶିବ ବୈରାଗୀ, କଠୋର ଓ କ୍ରୋଧୀ । ସେ କ'ଣ ଏସବୁର ଅର୍ଥ ବୁଝିବେ ? ଚାଲ ବରଂ ଘରକୁ ଫେରିଚାଲ ।"

"ଆପଣ ଦୁହେଁ ତ ମୋତେ ଆଶ୍ୱାସନା ଦେଇ କହିଥିଲେ କି ଶିବ ଅବଶ୍ୟହିଁ ମୋର ସ୍ୱାମୀ ହେବେ । ଏବେ ଏପରି କଥା କାହିଁକି



କହୁଛନ୍ତି ? ମୋତେ ମୋ ରାସ୍ତାରେ ଯିବାକୁ ଦିଅନ୍ତୁ । ମୁଁ ଅନ୍ତତଃ ମୋର ତପସ୍ୟା ପୂର୍ଣ୍ଣ କରିବି ।" ପାର୍ବତୀ କହିଲେ ।

ଏଣେ ଶିବଙ୍କ ନିକଟରେ ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ର ଆସି ପହଞ୍ଚିଲେ ଓ ଶିବଙ୍କୁ କହିଲେ, "ମହାଦେବ, ଆପଣ ପାର୍ବତୀଙ୍କ ସହିତ ବିବାହ କଲେ ଜଗତର କଲ୍ୟାଣ ହେବ । କାରଣ ଏବେ ତାରକାସୁରର ଅତ୍ୟାଚାରରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସବୁ ଥରହର । ତା'ର ବର ଅଛି ଶିବଅଂଶଜାତ ପୁତ୍ର ହାତରେହିଁ ସେ ମରିବ । ତା'ର ମୃତ୍ୟୁ ହେଲେ ଜଗତର କଲ୍ୟାଣ ହେବ ।"

"ତାରକାସୁରର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ତୁମ୍ଭେମାନେ ଅନ୍ୟ କୌଣସି ଉପାୟର ଚିନ୍ତା କର ।" ଶିବ କହିଲେ ।

"ମହାଦେବ! ସମସ୍ତ ଉପାୟ ଆମ୍ଭେମାନେ ଚିନ୍ତା କରି ସାରିଲୁଣି । ସେ ରାକ୍ଷସ ଅସୀମ ଶକ୍ତିମାନ୍ । ତା' କବଳରୁ ରକ୍ଷା କରିବେ ଏକମାତ୍ର ସେହି ଦେବତା, ଯିଏ କି ଆପଣଙ୍କ କଳା ନେଇ ଆପଣଙ୍କ ଅଂଶରୁ ଜାତ ହୋଇଥିବେ । ଅନ୍ୟ କୌଣସି ମାର୍ଗ ନାହିଁ ।" ଦେବତାମାନେ କହିଲେ ।

ଶିବ କହିଲେ, "ବିବାହ କରିଲେ ମୋର ତପସ୍ୟାରେ ବିଘ୍ନ ଘଟିବ । ଆଉ ଥରେ ସଂସାର ଧର୍ମ ଗ୍ରହଣ କଲେ ସେ ମାୟାରୁ ବାହାର ପାଇବା କଷ୍ଟ ।"

ବ୍ରହ୍ମା କହିଲେ, "ଜଗତର କଲ୍ୟାଣ ପାଇଁ ଆପଣ ଗାର୍ହସ୍ଥ୍ୟ ଧର୍ମ ନେବେ । ତା' ଛଡ଼ା ଆପଣ ଜାଣନ୍ତି ସତୀଦେବୀହିଁ ପାର୍ବତୀ ହୋଇ ଜନ୍ମ ହୋଇଛନ୍ତି ।"

ଶେଷରେ ଶିବ ସେମାନଙ୍କ ଅନୁରୋଧ ସ୍ୱୀକାର କଲେ । ପରେ ସେ ଚିନ୍ତା କଲେ ସତୀ ପାର୍ବତୀ ହୋଇ ଜନ୍ମ ହେଲେ ମଧ୍ୟ ଗୋଟିଏ ଜନ୍ମରେ କେତେ ନା କେତେ ଫରକ ଦେଖାଯାଏ । ତେଣୁ ପାର୍ବତୀଙ୍କୁ ପରୀକ୍ଷା କରିବା ପାଇଁ ସେ ଏକ ବୃଦ୍ଧ ଯତି ବେଶରେ ପାର୍ବତୀଙ୍କ ପାଖରେ ଯାଇ ପହଞ୍ଚିଲେ ।

ପାର୍ବତୀ ତାଙ୍କୁ ଦେଖି ନମ୍ର ଭାବରେ ପଚାରିଲେ, "ମହାତ୍ମନ୍! ଆପଣ କିଏ ?



ଆପଣ ଏଠାକୁ ବା କାହିଁକି ଆଗମନ କରିଛନ୍ତି ?"

"ମୁଁ ବ୍ରହ୍ମାଙ୍କ ବଂଶର ବ୍ୟକ୍ତି । ଜଗତର ହିତ ସକାଶେ ସର୍ବତ୍ର ମୁଁ ଭ୍ରମଣ କରିଥାଏ । ତମେ କାହାର ଝିଅ ? ଆଉ ଏଇ ମହାନ୍ ତପସ୍ୟା ବା କାହିଁକି କରୁଛ ? ଏଇକଥା ପଚାରିବା ପାଇଁ ମୁଁ ଏଠାକୁ ଆସିଛି ।" ଶିବ କହିଲେ ।

"ମୋର ପିତା ହେଉଛନ୍ତି ଗିରିରାଜ ହିମବାନ୍ ଓ ମାତା ମେନକା । ମୋ ନାମ ପାର୍ବତୀ । ଯେତେବେଳେ ଶିବ କୈଳାସରେ ତପସ୍ୟାରତ ଥିଲେ, ମୁଁ ସେତେବେଳେ ତାଙ୍କର ପରିଚର୍ଯ୍ୟା କରୁଥିଲି । ଦିନେ କାମଦେବ ଆସି ତାଙ୍କ ଉପରେ ପୁଷ୍ପବାଣ ନିକ୍ଷେପ କଲେ । ଶିବ ଜାଗି ଯିବାରୁ ତାଙ୍କ ଲଲାଟରେ ତୃତୀୟ ନୟନ ଦେଖାଦେଲା ଓ ସେଥିରୁ ଅଗ୍ନିର ଲେଲିହାନ ଶିଖା ନିର୍ଗତ ହୋଇ ଅଚିରେ କାମଦେବଙ୍କୁ ଭସ୍ମ କଲା । ସେଇଦିନଠାରୁ ମୁଁ ଏଠାରେ ନାରଦଙ୍କ ଦତ୍ତ ଶିବପଞ୍ଚାକ୍ଷରୀ ମନ୍ତ୍ର ଜପ କରୁଥାଏ । ଏତେଦିନ ହେବ ଯେତେବେଳେ ଶିବଙ୍କର ଆବିର୍ଭାବ ହେଲାନାହିଁ ତେଣୁ ଭାବୁଛି ଗୋଟିଏ ଚିତା ଜାଳି ସେଥିରେ ପ୍ରବେଶ କରି ମୋର ଜୀବନ ସମାପ୍ତ କରିବି ।" ପାର୍ବତୀ କହିଲେ ।

"ଆଚ୍ଛା! ତମେ ତ ବହୁତ ବଡ଼ ଭୁଲ କାମଟିଏ କରିବାକୁ ଯାଉଛ । ଶିବ ତ ଭୋଳାନାଥ, ପୁଣି ତପସ୍ୱୀ, ଘରବାଡ଼ି ନାହିଁ । ତମେ ତାଙ୍କ ପାଇଁ ତୁମର ତପସ୍ୟା ଶକ୍ତି ନଷ୍ଟ ନ କରି ଏବେ ଯେ କୌଣସି ଦେବତାଙ୍କ ମଧ୍ୟରୁ ଜଣକୁ ବାଛି ନେଇ ବିବାହ କରି ସୁଖରେ ସଂସାର କର ।" ଯତିରୂପୀ ଶିବ କହିଲେ ।

"ଆପଣଙ୍କ ପରାମର୍ଶ ପାଇଁ ଧନ୍ୟବାଦ । ଏବେ ଆପଣ ଏଠାରୁ ଦୟାକରି ଚାଲିଯା'ନ୍ତୁ ।" ପାର୍ବତୀ ରାଗିକରି କହିଲେ ।

"ଠିକ୍ ଅଛି । ମୁଁ ଯାଉଛି । କିନ୍ତୁ ଯିବା ପୂର୍ବରୁ ତୁମର ମଙ୍ଗଳ ପାଇଁ କିଛି କହିବାକୁ ଚାହେଁ । ଶିବ ଦରିଦ୍ର ଓ ବ୍ୟାଘ୍ରଚର୍ମ ପିନ୍ଧନ୍ତି । ଷଣ୍ଢଟିଏ ତାଙ୍କର ବାହନ । ସର୍ବଦା ତାଙ୍କ



ତତ୍ପାର୍ଶ୍ୱରେ ଭୂତ ଓ ପିଶାଚମାନେ ଥା'ନ୍ତି । ଶରୀରରେ ଚନ୍ଦନ ପରିବର୍ତ୍ତେ ଶ୍ମଶାନର ପାଉଁଶ ଲେପିଥା'ନ୍ତି । ତୁମେ ତାଙ୍କୁ ବିବାହ କରି କୌଣସି ସୁଖ ପାଇବ ନାହିଁ ।" ଯତିରୂପୀ ଶିବ କହିଲେ ।

ଏଥର ପାର୍ବତୀ ଆହୁରି ରାଗିଯାଇ କହିଲେ, "ମନେ ହେଉଛି ତୁମେ ଜଣେ କପଟ ଯତି । ଏପର୍ଯ୍ୟନ୍ତ ମୁଁ ଭ୍ରମରେ ଥିଲି ଯେ ତୁମେ ଜଣେ ଜ୍ଞାନୀ । ଶିବ ସମସ୍ତ ଐଶ୍ୱର୍ଯ୍ୟର ଅଧିକାରୀ । ତୁମେ ଜାଣ କି ଯିଏ ଶିବନିନ୍ଦା କରେ ସିଏ ସାତଜନ୍ମ ଧରି ଦାରିଦ୍ର୍ୟ ଭୋଗ କରେ ?" ତା'ପରେ ସେ ନିଜର ପରିଚାରିକାମାନଙ୍କୁ କହିଲେ ଯେ ଏହି ଯତିଙ୍କୁ ଏଠାରୁ ବିଦାୟ କରିଦିଅ ।

ତା'ପରେ ଶିବ ନିଜ ରୂପ ପ୍ରକଟ କଲେ ଓ ପାର୍ବତୀଙ୍କ ହାତ ଧରି ହସି ହସି କହିଲେ, "ପାର୍ବତୀ, ମୁଁ ତୁମ ମନକଥା ବୁଝିବା ପାଇଁ ଏପରି ଛଦ୍ମବେଶରେ ଆସିଥିଲି । ଦେଖ, ମୁଁ ତୁମର ଚିରଈପ୍ସିତ ସେହି ଶିବ । ଯାହା ପାଇଁ ତୁମେ ଏତେ ତପସ୍ୟା କରିଛ । ତୁମର ଅନୁପସ୍ଥିତିରେ ମୁଁ ବହୁତ କଷ୍ଟ ପାଇଛି । ଏବେ ମୋ ସହିତ କୈଳାଶ ଚାଲ ।"

ପାର୍ବତୀ ଆଶ୍ଚର୍ଯ୍ୟ ଓ ଆନନ୍ଦ ସହକାରେ କହିଲେ, "ହେ ମହାଦେବ, ଏପରି ଚାଲି-ଯିବାଟା ସୁନ୍ଦର ହେବ ନାହିଁ । ଆପଣ ମୋ ପିତାମାତାଙ୍କୁ କହି ମୋତେ ବିବାହ କରିବା ପରେ ମୁଁ ଆପଣଙ୍କ ସହ ଯିବି ।" ତା'ପରେ ପାର୍ବତୀ ଶିବଙ୍କୁ ପ୍ରଣାମ କରି ସଖୀମାନଙ୍କ ସହିତ ଘରକୁ ଲେଉଟି ଆସିଲେ । ପାର୍ବତୀଙ୍କଠାରୁ ସମସ୍ତ ଘଟଣା ଅବହିତ ହୋଇ ହିମବାନ୍ ଓ ମେନକା ଝିଅର ବିବାହ ପାଇଁ ସବୁ ପ୍ରକାର ପ୍ରସ୍ତୁତିରେ ଲାଗିଗଲେ ।

ଶିବ କୈଳାସରେ ପହଞ୍ଚି ନିଜର ଇଚ୍ଛା ପ୍ରକାଶ କରନ୍ତେ ନନ୍ଦୀ ଯାଇ ସପ୍ତର୍ଷିଙ୍କୁ ଡ଼ାକି ଆଣିଲେ । ଶିବଙ୍କର ଶୁଭ ବିବାହର ପ୍ରସ୍ତାବ ଦେବାକୁ ଓ ଲଗ୍ନ ସ୍ଥିର କରିବାକୁ ସେମାନେ ହିମବାନ୍ ଓ ମେନକାଙ୍କ ନିକଟକୁ ଗଲେ । ଶିବଙ୍କ କାର୍ଯ୍ୟ କରୁଥିବାରୁ ସେମାନେ ନିଜକୁ କୃତାର୍ଥ ମଣିଲେ ।



ସପ୍ତର୍ଷିଙ୍କୁ ଦେଖି ହିମବାନ ଓ ମେନକା ସାଦର ଅଭ୍ୟର୍ଥନା ଜଣାଇଲେ ଓ ପଚାରିଲେ, "ଆପଣମାନଙ୍କୁ ମୁଁ କିପରି ଭାବରେ ସେବା କରିପାରେ ଆଜ୍ଞା କରନ୍ତୁ । ଆପଣମାନେ ଆସି ମୋ ଗୃହ ପବିତ୍ର କଲେ ।"

ଋଷିଗଣ କହିଲେ, "ଆପଣ ଦୁଇଜଣ ଖୁବ୍ ଭାଗ୍ୟବାନ୍ । କାରଣ ସ୍ୱୟଂ ଜଗତମାତା ଦୁର୍ଗା ଆପଣଙ୍କର ଝିଅ ହୋଇ ଜନ୍ମ ହୋଇଛନ୍ତି । ଭଗବାନ୍ ଶିବ ଆପଣଙ୍କ ଝିଅଙ୍କୁ ବିବାହ କରିବାକୁ ଚାହାନ୍ତି । ଏବେ ଲଗ୍ନ ଓ ଶୁଭ ସମୟ ଠିକ୍ କରାଯାଉ ।"

ଅତ୍ୟନ୍ତ ଗାମ୍ଭୀର୍ଯ୍ୟ ସହକାରେ ମେନକା ଏବଂ ହିମବାନ ସେମାନଙ୍କ ମନ ବୁଝିବା ପାଇଁ କହିଲେ, "ମହର୍ଷିଗଣ, ଆପଣ କହିବା ପୂର୍ବରୁ ହିଁ ଆମେ ସେକଥା ମନସ୍ଥ କରି ସାରିଛୁ । କିନ୍ତୁ ଗତ କାଲି ଜଣେ ଭିକ୍ଷୁ ଆସି ଆମର ଅତିଥି ହୋଇଥିଲେ । ସେ ଆମକୁ ବୁଝାଇ କହିଲେ, 'ତୁମ ଝିଅ ରାଜକନ୍ୟା, ସୁନ୍ଦରୀ, ସୁକୁମାରୀ । ସେ କିପରି ଶିବଙ୍କ ସହିତ ଚଳିବ ? ଶିବଙ୍କର ନା ଅଛି ରାଜଭବନ, ନା ଅଛି ଖାଇବା ପାଇଁ ଖଣ୍ଡେ ବାସନ ନା ପିନ୍ଧିବା ପାଇଁ ଖଣ୍ଡେ ଲୁଗା । ସର୍ବଦା ଶ୍ମଶାନରେ ଭୂତପିଶାଚଙ୍କ ସହ ଘୁରି ବୁଲନ୍ତି ଓ ଖପରରେ ଭିକ ମାଗି ଖା'ନ୍ତି । ତେଣୁ ସେଠାରେ ଏ ରାଜକୁମାରୀ କିପରି ଚଳିବେ ?' ତାଙ୍କ କଥା ଶୁଣି ଆମ ମନ ନାନା ଆଶଙ୍କାରେ ଭରି ଉଠୁଛି ।"

ହିମବାନଙ୍କ କଥାରେ ଋଷିମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ସେମାନେ କିଛିଟା କୁପିତ ହୋଇ କହିଲେ, "ସେହି ଭିକ୍ଷୁ ଅବଶ୍ୟ ଦୁଷ୍ଟ ପ୍ରକୃତର, ନଚେତ୍ ଏପରି କହିପାରନ୍ତା କିମିତି ? ଜଗତର ମଙ୍ଗଳ ପାଇଁ ହେଉଥିବା ଶିବବିବାହରେ କେହି ଅମଙ୍ଗଳ ଘଟାଇବା ଉଦ୍ଦେଶ୍ୟରେ ଏପରି କରିଛି । ପାର୍ବତୀ ନିଜେ ପରାଶକ୍ତି ସେ ଶିବଙ୍କୁ ଯେପରି ହେଲେ ବିବାହ କରିବେ । ସେଇଥିପାଇଁ ହିଁ ସେ ଆପଣଙ୍କ ନିକଟରେ ଜନ୍ମ ନେଇଛନ୍ତି ।

ଏହି ପ୍ରସଙ୍ଗରେ ମହର୍ଷି ବଶିଷ୍ଠ କହିଲେ, "ତୁମର ମନୋମାଳିନ୍ୟ ଦୂର କରିବାକୁ ମୁଁ

ଗୋଟିଏ ପ୍ରସଙ୍ଗ କହୁଛି ଶୁଣ । ହଂସଶାବର୍ଣ୍ଣି ନାମକ ଚତୁର୍ଦ୍ଦଶ ମନୁଙ୍କ ବଂଶରେ ରାଜା ଅନରଣ୍ୟ ଜନ୍ମ ନେଇଥିଲେ । ସେ ଥିଲେ ଚକ୍ରବର୍ତ୍ତୀ ରାଜା । ତାଙ୍କ ପାଖରେ ବୃହତ ନାମକ ଜଣେ ତପସ୍ୱୀ ପୁରୋହିତ ଥା'ନ୍ତି । ରାଜାଙ୍କର ପାଞ୍ଚଜଣ ପତ୍ନୀ ଓ ଏକଶହ ପୁତ୍ର ଥା'ନ୍ତି । ତାଙ୍କର ଶେଷ ସନ୍ତାନଟି ହେଲା ଗୋଟିଏ ଝିଅ । ଅତି ସରାଗରେ ରାଜା ତା'ର ନାମ ରଖିଲେ ପଦ୍ମାବତୀ । ପଦ୍ମ ପରି ଥିଲା ସେ ସୁନ୍ଦର । କ୍ରମେ ବାଲ୍ୟାବସ୍ଥା ଟପି ସେ ଯୌବନରେ ପଦାର୍ପଣ କଲା । ରାଜା ମଧ୍ୟ ନାନା ରାଜ୍ୟରେ ଖବର ନେଇ ବୁଝୁଥା'ନ୍ତି କେଉଁଠି ସବୁଠାରୁ ସୁନ୍ଦର ଓ ଗୁଣବାନ୍ ଯୁବରାଜ ଅଛନ୍ତି ।

ଦିନେ ପଦ୍ମାବତୀ ନିଜର ସଖୀମାନଙ୍କ ସହିତ ଗୋଟିଏ ନଦୀରେ ସ୍ନାନ କରୁଥାନ୍ତି । ସେତେବେଳେ ପିପ୍‌ପଳାଦ ନାମକ ଏକ ମୁନି ସ୍ନାନ କରିବା ପାଇଁ ସେଇ ନଦୀକୁ ଆସିଲେ । ସେ ଥିଲେ ଭୃଗୁବଂଶର ମହାମୁନି ଦଧିଚଙ୍କରଙ୍କ ପୁତ୍ର । ପିପ୍‌ପଳାଦ ପଦ୍ମାବତୀଙ୍କୁ ଦେଖି ଏତେ ମୁଗ୍‌ଧ ହୋଇଗଲେ ଯେ ତତ୍‌କ୍ଷଣାତ୍ ଅନରଣ୍ୟଙ୍କ ପାଖକୁ ଯାଇ ବିବାହ ପ୍ରସ୍ତାବ ଦେଲେ । ସେ ସବୁ ଶୁଣି ଅବାକ୍ । ସେ ମନେ ମନେ କେତେ ସ୍ୱପ୍ନ ଦେଖିଥିଲେ ସୁନ୍ଦରୀ ଝିଅକୁ କୌଣସି ସୁନ୍ଦର ରାଜପୁତ୍ରକୁ ବିବାହ ଦେବେ । ଆଜି ଏଇ ବୁଢ଼ା ଋଷି କେଉଁଠୁ ଆସି ଜୁଟିଲେ ? ଏଣେ ସିଧା ମନାକରି ଦେଲେ ମୁନି ଅଭିଶାପ ଦେବେ । ପୁଣି ଏପରି ଅବାନ୍ତର କଥା ସ୍ୱୀକାର ବା କପରି କରିବେ । ତାଙ୍କ ହୃଦୟ ଦୁଃଖରେ ଫାଟି ପଡ଼ିଲା । ସେ କିଛି ନ କହି ମୌନ ରହିଲେ । ରାଜସଭାରେ ନୀରବତା ଛାଇଗଲା । ମନ୍ତ୍ରୀ ଓ ଅନ୍ୟମାନେ ଏ ସମସ୍ୟାର ସମାଧାନ ପରେ କରାଯିବ ବୋଲି ମୁନିଙ୍କୁ କହିଲେ । ତା'ପରେ ସେମାନେ ରାଜାଙ୍କୁ ବହୁତ ପ୍ରକାରେ ସାନ୍ତ୍ୱନା ଦେଲେ ।



# ସର୍ବଜ୍ଞ

ରାଜା ଭରତସିଂହଙ୍କ ମନ୍ତ୍ରୀ ଆଦର୍ଶ ଶର୍ମା ଥିଲେ ଜଣେ ବିଚକ୍ଷଣ ବ୍ୟକ୍ତି, କିନ୍ତୁ ବାର୍ଦ୍ଧକ୍ୟ ହେତୁ ସେ ମନ୍ତ୍ରୀପଦରୁ ଅବସର ନେବା ପାଇଁ ରାଜାଙ୍କୁ ଅନୁମତି ପ୍ରାର୍ଥନା କଲେ । ରାଜା କହିଲେ, "ତେବେ ନୂଆ ମନ୍ତ୍ରୀ ନିର୍ବାଚନ ଆପଣହିଁ କରନ୍ତୁ ।"

ମନ୍ତ୍ରୀପଦ ପାଇଁ ଅନେକ ପ୍ରାର୍ଥୀ ଆସିଲେ । ବୃଦ୍ଧ ମନ୍ତ୍ରୀ ସମସ୍ତଙ୍କୁ ପରୀକ୍ଷା କଲେ । ପରୀକ୍ଷାରେ ମାତ୍ର ଦୁଇଜଣ ଯୁବକ ସର୍ବଶ୍ରେଷ୍ଠ ବିବେଚିତ ହେଲେ ! ଏବେ ପ୍ରଶ୍ନ ହେଉଛି କିଏ ମନ୍ତ୍ରୀପଦ ପାଇବ ।

ଦୁଇ ଯୁବକଙ୍କୁ ମନ୍ତ୍ରୀ ନିଜ ଘରକୁ ନିମନ୍ତ୍ରଣ କଲେ । ସେଠାରେ ଏକ ବିରାଟ କକ୍ଷରେ ସୁନାଜରି ଓ ଗଦି ପଡ଼ିଥିବା ଏକ ଉଚ୍ଚ ଆସନ ରଖା ହୋଇଥିଲା । ମନ୍ତ୍ରୀ ଦୁଇଜଣଙ୍କୁ କହିଲେ, "ତମେ ଦୁହେଁ ସମାନ ଭାବରେ ଉତ୍ତୀର୍ଣ୍ଣ ହୋଇଛ । ଯିଏ ନିଜକୁ ସର୍ବଜ୍ଞ ବୋଲି ଭାବିବ ସେ ଏହି ଉଚ୍ଚଆସନରେ ବସୁ । ମୁଁ ପାଞ୍ଚ ଗଣିବା ଭିତରେ ନିଜର କାର୍ଯ୍ୟ ନିର୍ଣ୍ଣୟ କର ।"

ତତ୍କ୍ଷଣାତ୍ ପ୍ରଥମ ଯୁବକଟି ଯାଇ ସେଥିରେ ବସି ପଡ଼ିଲା । ଆଦର୍ଶ ଶର୍ମା ଦ୍ୱିତୀୟ ଯୁବକଟିକୁ ରାଜାଙ୍କ ପାଖକୁ ନେଇ କହିଲେ, "ମହାରାଜ ଏହି ଯୁବକହିଁ ମନ୍ତ୍ରୀପଦ ପାଇଁ ଯଥାର୍ଥରେ ଯୋଗ୍ୟ ପାତ୍ର ।"





# ଚୋର ଓ ଫକୀର

ଇସ୍ପାହାନ ନଗରରେ କମରୁଦ୍ଦୀନ ନାମରେ ଜଣେ ବ୍ୟବସାୟୀ ଥିଲେ । ଦିନେ ରାତିରେ ସେ ଦୋକାନ ବନ୍ଦ କରି ଘରକୁ ଫେରୁଥା'ନ୍ତି; ହାତରେ ଥାଏ ଗୋଟିଏ ମୁଦ୍ରାପୂର୍ଣ୍ଣ ଥଳୀ । ସେଥିରେ ଥାଏ ଦିନଯାକର ରୋଜଗାର । କିଛିଦୂର ଯିବା ପରେ ହଠାତ୍ ଗୋଟାଏ ଯୁବକ ଚୋର ଆସି ତାଙ୍କ ହାତରୁ ଥଳୀଟି ଛଡ଼େଇ ନେଇ ପଳାଇଗଲା । କମରୁଦ୍ଦୀନ 'ଚୋର' 'ଚୋର' ବୋଲି ଚିତ୍କାର କରିବାରୁ ପାଖରେ ଥିବା ଲୋକମାନେ ଦୌଡ଼ି ଯାଇ ଚୋରକୁ ଧରିଲେ । ତା'ପରେ ସେମାନେ ଚୋରକୁ ନେଇ ସହରର ଥିବା କୋଟୁଆଳ ପାଖକୁ ଗଲେ ।

କୋଟୁଆଳକୁ ଦେଖିବା ମାତ୍ରେ ଚୋର କୋଟୁଆଳର ପାଦତଳେ ପଡ଼ି କ୍ଷମା ମାଗିଲା । କୋଟୁଆଳ ତା'ର ଚୁଟି ଧରି ଚିତ୍କାର କରି କହିଲା, "ଚୋର ଏଡ଼େ ସାହସ? ମୁଁ କୋଟୁଆଳ ଥାଉଁ ଥାଉଁ ତୁ ଚୋରି କରୁଛୁ! ଯା, ମର!" କହି ତାକୁ ଜୋରରେ ଗୋଟାଏ ଗୋଇଠା କଷି ଦେଲା । ମାଡ଼ ଖାଇ ଚୋର ତନଗଡ଼ା ଦେଇ ପଡ଼ିଲା । ପଡ଼ି ପୁଣି ଉଠି ସେ ଦୌଡ଼ିଲା ଆଉ ପଛକୁ ଚାହିଁନ । ଏଣେ ଅନ୍ୟ ଲୋକ ଓ ସିପାହିମାନେ ତା' ପଛରେ ଯେତେ ଗୋଡ଼ାଇଲେ ଆଉ ତାକୁ ଧରି ପାରିଲେ ନାହିଁ ।

ଲୋକମାନେ ଖୋଜି ଖୋଜି ନ ପାଇବାରୁ ସବୁ ଫେରିଗଲେ । କିନ୍ତୁ ସିପାହିମାନେ ଅଦୂର ଖୋଜୁଥା'ନ୍ତି । ଚୋର ବିଚରା ଦୌଡ଼ି ଦୌଡ଼ି ଗୋଟିଏ ଜଙ୍ଗଲରେ ଯାଇ ପହଞ୍ଚିଲା । ଦୂରରୁ ସିପାହିମାନଙ୍କ ପାଦଶବ୍ଦ ଓ କଥାବାର୍ତ୍ତା ଶୁଭୁଥାଏ । ସେ ଆଗରେ ଦେଖିଲା ଗୋଟାଏ ଗୁମ୍ଫା । ଚଟାପଟ ତା' ଭିତରେ ପଶିଗଲା ।

ପ୍ରକୃତରେ ଏହା ଜଣେ ସାଧୁ ଫକୀରଙ୍କର ଗୁମ୍ଫା । ଚୋର ଗୁମ୍ଫାରେ ପଶିଯାଇ ଦେଖିଲା କେହି ନାହିଁ । ଗୋଟିଏ ଚଦର ପଡ଼ିଥିଲା ସେଇଟା ଉଠାଇ ନେଇ ଘୋଡ଼େଇ ହୋଇ ପଡ଼ି ଧ୍ୟାନମଗ୍ନ ହୋଇ ବସିଗଲା ।



କିଛି ସମୟ ପରେ ସିପାହୀମାନେ ସେଠାକୁ ଆସି ଦେଖିଲେ ଫକୀର ରୂପୀ ଚୋର ବସିଛି । ସେମାନେ ସାଧୁ ବୋଲି ଭାବି କହିଲେ, "ମହାତ୍ମାଜୀ, ଏପଟେ ପଳାଇ ଯାଉଥିବା କୌଣସି ଲୋକକୁ ଆପଣ ଦେଖିଛନ୍ତି କି ?"

"ନାଁ ତ ?" ଗମ୍ଭୀର ହୋଇ ସାଧୁ କହିଲେ ।

"ଆପଣଙ୍କ ଧ୍ୟାନରେ ଆମେ ବିଘ୍ନ ଘଟାଇଲୁ, ଆମକୁ କ୍ଷମା କରନ୍ତୁ ।" କହି ସେମାନେ ଚୋରକୁ ପ୍ରଣାମ କରି ଚାଲିଗଲେ ।

ଏବେ ଚୋର ମନରେ ଆଉ ଭୟ ନାହିଁ । ମନ ଭିତରେ ଆଶଙ୍କା ନାହିଁ । ମନ ସମ୍ପୂର୍ଣ୍ଣ ସ୍ଥିର । ସିପାହୀମାନଙ୍କର ପ୍ରଣାମ କଥା ଭାବି ସେ ବହେ ହସିଲା । କିନ୍ତୁ ପର ମୁହୂର୍ତ୍ତରେ ସେ ଭାବିଲା, "ମୁଁ ଫକୀର ହେବାର ଅଭିନୟ କରିବାରୁ କେତେ ବଡ଼ ବିପଦରୁ ରକ୍ଷା ପାଇଲି; ପୁଣି ଅନ୍ୟମାନେ ମୋତେ କେତେ ସମ୍ମାନ କଲେ । ସତରେ ଯେବେ ଫକୀର ହୋଇଯିବି ତେବେ ଆହୁରି ସମ୍ମାନ ପାଇବି ଓ ମୋ ଜୀବନ ସାର୍ଥକ ହୋଇଯିବ । ତେଣୁ ମୁଁ ଫକୀର ହୋଇଯିବି ।"

ଚୋର ଏହି ପ୍ରକାର ଭାବୁଛି, ସେତେବେଳେ ଗୁମ୍ଫାରେ ରହୁଥିବା ପ୍ରକୃତ ଫକୀର ଆସିଗଲେ । ଚୋର ହଠାତ୍ ତାଙ୍କୁ ଦେଖି ଡରିଗଲା, କିନ୍ତୁ ପରେ ତାଙ୍କ ପାଦତଳେ ପଡ଼ିଯାଇ କହିଲା, "ମହାତ୍ମା, ମୋତେ ଆପଣଙ୍କ ଚରଣ ସେବା କରିବାର ଅନୁମତି ଦିଅନ୍ତୁ ।" ଦୟାଳୁ ଫକୀର ତାର ଇଚ୍ଛାକୁ ସ୍ୱୀକାର କଲେ ଓ ତାକୁ ଅଭୟ ଦେଇ ପାଖରେ ରଖିଲେ । ସେହିଦିନଠାରୁ ସେ ଫକୀରଙ୍କର ସେବାଶୁଶ୍ରୂଷା କରି ଓ ତାଙ୍କଠାରୁ ଧର୍ମୋପଦେଶ ଶୁଣି ସେହିଠାରେହିଁ ରହିଥାଏ । ଧୀରେ ଧୀରେ ତାହାର ହୃଦୟ ପରିବର୍ତ୍ତନ ହେଲା ଓ ସେ ଜଣେ ଧାର୍ମିକ ଲୋକ ହୋଇଗଲା ।

କେତେବର୍ଷ ବିତିଗଲା । ଫକୀରଙ୍କର ମୃତ୍ୟୁ ହୋଇଗଲା । ଗୈରହିଁ ସାଧୁ ବନିଯାଇ ଫକୀରଙ୍କ ସ୍ଥାନରେ ଧର୍ମୋପଦେଶ ଦେଇ ଖୁବ୍ ସୁନାମ ଅର୍ଜ୍ଜନ କଲା ।

ଦିନେ ଜଣେ ଶିଷ୍ୟ ଏହି ନୂତନ ଫକୀରଙ୍କୁ ସହରକୁ ଥରେ ନେଇଯିବାକୁ ଚାହିଁଲା । ସେ ମଧ୍ୟ ଗଲା ଓ ସେଠାରେ ଲୋକମାନେ ଧର୍ମ ଉପରେ ନାନା ପ୍ରକାର ପ୍ରଶ୍ନ ଓ ସମସ୍ୟା ତାଙ୍କ ପାଖରେ ଉପସ୍ଥାପିତ କରି ସମାଧାନ ପାଇଁ ଅନୁରୋଧ କରୁଥାନ୍ତି । ଗୈର ମଧ୍ୟ ପାରୁପର୍ଯ୍ୟନ୍ତ ସବୁ ଉତ୍ତର ଦେଉଥାଏ । ଲୋକମାନଙ୍କ ମଧ୍ୟରୁ ଜଣେ ବୃଦ୍ଧ ବାହାରି ଆସି ଗୈରରୂପୀ ସାଧୁର ଚରଣ ସ୍ପର୍ଶ କରି ହାତ ଯୋଡ଼ି କହିଲା, "ମହାତ୍ମା, ମୋର ସାରା ଜୀବନ ଧରି ମୁଁ ଏଇ ରାଜ୍ୟରେ କଟୁଆଳ ଅଛି । କିନ୍ତୁ ମୁଁ ଯଦି ଖୋଦାଙ୍କ ପାଖକୁ ଯିବାକୁ ଚାହେଁ ତେବେ କିଛି ଚମତ୍କାର ଘଟଣା ଘଟିଲେ ତେବେ ହୁଏତ ତାହା ସମ୍ଭବ ହେବ । ଅର୍ଥାତ୍ ଆପଣଙ୍କଲ କିଛି ବିଭୂତି ଥିଲେ ଏକଥା ସମ୍ଭବ ହେବ । ନହେଲେ ଏଇ ଜୀବନରୁ ମୁଁ ଏତେ ଆଶା କିପରି କରିବି ? କ'ଣ, ସମ୍ଭବ ?"

"ତମେ କାହିଁକି ଖୋଜୁଛ ଚମତ୍କାର ଘଟଣା କଥା ? ସମୟ ଥିଲା ଯେତେବେଳେ ମୁଁ ତୁମ ପାଦ ଧରିଥିଲି ଓ ତମେ ଗୋଇଠା ମାରି ମୋତେ ଫୋପାଡି ଦେଲ ଏବଂ ଏବେ ତମେ ମୋ ପାଦ ଆଦରପୂର୍ବକ ସ୍ପର୍ଶ କରୁଛ । ଏହାଠାରୁ ବଳି ଆଉ ଅଧିକ ଚମତ୍କାର ଘଟଣା କ'ଣ ହୋଇପାରେ ? ଗୈର ଯଦି ଖୋଦାଙ୍କ ଦୟାରୁ ସାଧୁ ହେଲା, ଗୈର ଧରିବା ଲୋକ କାହିଁକି ଖୋଦାଙ୍କୁ ପ୍ରାପ୍ତ ନ ହେବ ?" କହି ସେ ଅଳ୍ପ ହସିଲା । ବୁଢ଼ା ବହୁ ଚେଷ୍ଟା କରି ମଧ୍ୟ କିଛି ବୁଝି ନ ପାରିବାରୁ, ନୂଆ ସାଧୁ ସବୁକଥା ବିସ୍ତାର କରି କହିଲେ । ତାଙ୍କ ଜୀବନ କାହାଣୀ ବୁଢ଼ା ଓ ଅନ୍ୟମାନଙ୍କ ଆଖିରେ ଲୁହ ଆଣି ଦେଲା ।



ପଶୁ-ପକ୍ଷୀ :

# ସାମୁଦ୍ରିକ ଓଧ

୧୭୪୧ ରେ "ସେଣ୍ଟ ପିଟର" ନାମକ ଏକ ରୁଷୀୟ ଜାହାଜ ବେରିଂ ଦ୍ୱୀପ ନିକଟରେ ଧ୍ୱଂସପ୍ରାପ୍ତ ହେବାରୁ କେତେକ ଯାତ୍ରୀ ସନ୍ତରଣ କରି କୂଳକୁ ଆସି ଜୀବନ ରକ୍ଷା କଲେ । ପହିଁର ଆସୁଥିବା ବେଳେ "ସି ଓଟର" ବା ସାମୁଦ୍ରିକ ଓଧ ନାମକ ଏକ ସ୍ତନ୍ୟପାୟୀ ଜଳଚର ପ୍ରାଣୀକୁ ହଜାର ହଜାର ସଂଖ୍ୟାରେ ପହଁରୁଥିବାର ଦେଖିଲେ । ସେମାନେ କୂଳରେ ପହଞ୍ଚି ସେମାନଙ୍କୁ ଶିକାର କରି ଖାଇଲେ ଓ ସେମାନଙ୍କ ଚର୍ମ ପୋଷାକ ପାଇଁ ଗଚ୍ଛିତ କରି ରଖିଲେ । ଦେଶକୁ ଫେରି ସେଗୁଡ଼ିକ ବିକିଲେ । ସେହିଦିନଠାରୁ ଏ ପ୍ରାଣୀମାନଙ୍କୁ ଅନେକ ସଂଖ୍ୟାରେ ଶିକାର କରାଯାଏ ଏପରି ସମୟ ଆସିଲା ଯେ ପ୍ରଶାନ୍ତ ମହାସାଗର କୂଳରେ ଅନେକ ସ୍ଥାନରେ ରହୁଥିବା ଲକ୍ଷାଧିକ ଏହି ପ୍ରାଣୀଗୁଡ଼ିକ ଶିକାରୀଙ୍କ ଯୋଗୁ ଲୁପ୍ତ ହେବାକୁ ଲାଗିଲେ । ତା'ପରେ ୧୯୧୦ ରେ ଆମେରିକାରେ ଓ ୧୯୧୫ ରେ ଅନ୍ୟ ଦେଶମାନଙ୍କରେ ଏହି ପ୍ରାଣୀଙ୍କୁ ଲୋପ କରିବା ବିରୁଦ୍ଧରେ ଆଇନ୍ ସବୁ ପ୍ରଣୟନ ହେଲା ।

ଯେଉଁଠାରେ ଗଭୀର ପାଣି ଓ ସ୍ଥଳ ଭାଗ ଥାଏ ସେଠାରେ ଏମାନେ ରହନ୍ତି । ଏମାନଙ୍କ ଦେହ ଏକ ମିଟର ଓ ଲାଞ୍ଜ ଏକ ମିଟର୍‌ରୁ କିଛି କମ୍ ଲମ୍ବ ହୋଇଥାଏ । ଏମାନଙ୍କ ମୁଣ୍ଡ ବଡ଼ ଓ ବେକ ଛୋଟ ହୋଇଥାଏ; ଆଖି କାନ ମଧ୍ୟ ଛୋଟ ଛୋଟ ହୋଇଥାଏ । ମୁହଁରେ ବହୁତ ଲମ୍ବା ନିଶଦାଢ଼ି ଥାଏ । ଆଗ ଗୋଡ଼ ଦୁଇଟି ପଛଗୋଡ଼ ଅପେକ୍ଷା ଛୋଟ ହୋଇଥାଏ । ଆଙ୍ଗୁଳିମାନଙ୍କ ମଧ୍ୟରେ ପତଳା ଚମ ଥିବାରୁ ସନ୍ତରଣ ପାଇଁ ସୁବିଧା ହୁଏ । ସମୁଦ୍ର କୂଳରେ ଅଧା ପାଣିରେ ବୁଡି ସେମାନେ ଶୋଇପା'ନ୍ତି । ଲହଡ଼ି ଉପରେ ମୁହଁ ଉପରକୁ ରଖି ଭାସୁଥା'ନ୍ତି, ସେମାନେ ଶୋଇବାବେଳେ ଜଣେ ପହରା ଦେଉଥାଏ । ନିଦରୁ ଉଠି ସେମାନେ ପାଣି ଭିତରେ ବୁଡି ଶାମୁକା, କଙ୍କଡ଼ା ଆଦି ଧରି ଖା'ନ୍ତି । ପାଣିରେ ଭାସୁଥିବା ବେଳେ ବେଳେ ବେଳେ ପେଟ ଉପରେ ପଥରଟି ରଖିଥା'ନ୍ତି ଓ ସାମୁକା ଆଦି ସେଥିରେ ପିଟି ଭାଙ୍ଗି ତା' ଭିତରେ ଥିବା ଜୀବକୁ ଖା'ନ୍ତି, ଦୁଇବର୍ଷରେ ଥରେ ସେମାନେ ଛୁଆ କରନ୍ତି । ସେତେବେଳେ ମାଟି ଉପରକୁ ଉଠି ଆସନ୍ତି ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୮୫ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



G. Prabhakar

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ମେ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଗୃମର ଉପରୁ ଗଡ଼ ଯିବଛିଲେ, ଏ ଭାଇମାନଙ୍କ ନାଚକୁ ଦେଖି !

ଦ୍ୱିତୀୟ ଚିତ୍ର : ନ ଦେଖିବା ଭଲ ଏ ଝିଅଙ୍କ ଖେଳ, କାଳେ ପଡ଼ିଯିବ ମୁଣ୍ଡରୁ ଠେକ !!

ପୁରସ୍କାର ବିଜୟୀ : କୈଳାସ ଚନ୍ଦ୍ର ବେହେରା, ଜଲ୍ଲଣ୍ଡି (ଗଞ୍ଜାମ)।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. କାର୍ଲ ଫଙ୍କ୍। ୨. ମାଦାମ କ୍ୟୁର୍। ୩. ନିକୋଲାସ୍ ସେମିନୋଭ୍। ୪. ଏଭୋଗାଡ୍ରି। ୫. ଫେରାଡେଙ୍କ ଶିକ୍ଷକ ହାଂଫ୍ରେ ଡାଭି।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# ନୂଆ ସକାଳ ହେଲା, ନୂଆ ଖରା ପଡ଼ିଲା

## ନୂଆ ସନଲାଇଟ

### ଡିଟର୍ଜେଣ୍ଟ ପାଉଡର

**ଆପଣଙ୍କ ଲୁଗାପଟାରେ ଗର୍ବ'ର ଆଭା ଉକୁଟାଏ!**

ଆପଣ ବି ଭଲ ସବୁକୁ ଚାହାନ୍ତି ଆସନ୍ତୁ ସନଲାଇଟ'ର ଝଲମଲ ଆଭା। ନୂଆ ସନଲାଇଟ ଡିଟର୍ଜେଣ୍ଟ ପାଉଡର—ଓଜନରେ ଏକଦମ ହାଲୁକା, ଅଥଚ ପ୍ରତ୍ୟେକ ଗା'ର ଅନେକ ଅଧିକା। ଅନ୍ୟ ଦାମିକା ପାଉଡରମାନଙ୍କ ପରି ଦାମିକା, ହେଲେ ଦାମ ଅନେକ କମ୍ ଅନେକ କମ!

ସନଲାଇଟରେ ଅଛି ଏକ ପଦାର୍ଥ ବ୍ଲେଣ୍ଡ, ଯାହା ସାଧାରଣ ପାଉଡରଗୁଡ଼ିକରେ ନ ଥାଏ ଲକ୍ଷଣ, ଏହା ଲୁଗାପଟାର ତନ୍ତୁ ତନ୍ତୁରୁ ମଇଳା ବାହାର କରେ, ଅଧିକ ଆଭା ଉକୁଟାଏ ସେ ସବୁରେ।

ସନଲାଇଟରେ ନା ହାତକୁ କଷ୍ଟ, ନା କ୍ଷୟ ଲୁଗାପଟାର ଅଧିକ। ଆଉ ଏହାର ସତେଜ ମୃଦୁ ବାସ୍ନା ଦୂରେଇ, ଆପଣଙ୍କ ଲୁଗାପଟାରେ ରହେ ବହୁସମୟ ପୂରେଇ।

ତେବେ ଆସନ୍ତୁ, ଆପଣ ବି ସନଲାଇଟ'ର ଝଲମଲ ଆଭା ଉପଭୋଗ କରନ୍ତୁ। ଆଜି ହିଁ ବ୍ୟବହାର କରନ୍ତୁ ଅବଶ୍ୟ— ୨ କିଲୋ ପ୍ୟାକରେ ମିଳେ।







**ସୂର୍ଯ୍ୟପ୍ରଭା ସମ ଝଲମଲ କରେ ପୋଷାକ ତବ।**

ହିନ୍ଦୁସ୍ଥାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ। OBM/2568·ORI

ଛୋଟିଆରୁ ଛୋଟିଆ ଘାଆରେ ବି ଧୂଳି ଲାଗିପାରେ, ଯଦ୍ୱାରା ଘାଆ ସଂକ୍ରାମିତ ହୋଇପାରେ, ଅସୁବିଧା କରିପାରେ ।

# ତୁରନ୍ତ, ବ୍ୟାଣ୍ଡ-ଏଡ୍ ଲଗାନ୍ତୁ




ବ୍ୟାଣ୍ଡ-ଏଡ